ବିଜ୍ଞାନ କ୍ୱିଜ୍

# ମହାକାଶ ବିଜ୍ଞାନ କ୍ୱିଜ୍

ଇଂ. ମାୟାଧର ସ୍ୱାଇଁ
ବି.ଏସ୍‌ସି. ଇଞ୍ଜିନିୟରିଙ୍ଗ୍ (ବିଦ୍ୟୁତ୍)
ଏମ୍.ଇ. (ଜଳ ସମ୍ପଦ ବିକାଶ), ଏଫ୍.ଆଇ.ଇ

ଗ୍ରନ୍ଥମନ୍ଦିର

# ASTRONOMY QUIZ

*by* : **Er. Mayadhar Swain**
*B.Sc. Engg. (Electrical),*
*M.E. (Water Resources Development), F.I.E.*
*Deputy General Manager, MECON Limited, Ranchi*

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ପ୍ରକାଶନ ପରିଚାଳନା : ଅଭିରାମ ମହାପାତ୍ର

ଡି.ଟି.ପି. ଓ ମୁଦ୍ରଣ : ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟ୍‌ସ**
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ଜୁନ୍, ୨୦୦୯
(୭୫୦)

ମୂଲ୍ୟ : ଟ.୩୦/-

# ସୂଚୀପତ୍ର



—

# ୧ । ସୌର ଜଗତ

1. ଆମ ସୌରମଣ୍ଡଳର ଗ୍ରହ ସଂଖ୍ୟା କେତେ ?
(କ) 6 (ଖ) 8 (ଗ) 9 (ଘ) 10
2. ଆମ ସୌରମଣ୍ଡଳର ବୃହତ୍ତମ ଗ୍ରହର ନାମ କ'ଣ ?
(କ) ବୃହସ୍ପତି (ଖ) ମଙ୍ଗଳ (ଗ) ଶନି (ଘ) ନେପଚୁନ୍
3. ଆମ ସୌରମଣ୍ଡଳର କ୍ଷୁଦ୍ରତମ ଗ୍ରହ କେଉଁଟି ?
(କ) ପୃଥିବୀ (ଖ) ମଙ୍ଗଳ (ଗ) ବୁଧ (ଘ) ପ୍ଲୁଟୋ
4. ସୂର୍ଯ୍ୟଠାରୁ ସବୁଠାରୁ ଦୂରରେ କେଉଁ ଗ୍ରହ ଅଛି ?
(କ) ବୃହସ୍ପତି (ଖ) ୟୁରାନ୍‌ସ (ଗ) ନେପ୍‌ଚୁନ୍ (ଘ) ପ୍ଲୁଟୋ
5. ଏଥିଭିତରୁ କେଉଁ ଗ୍ରହଟି ଖାଲି ଆଖିରେ ଦେଖାଯାଏ ନାହିଁ ?
(କ) ନେପଚୁନ୍ (ଖ) ଶନି (ଗ) ବୁଧ (ଘ) ମଙ୍ଗଳ
6. ସୌରମଣ୍ଡଳର ବୃହତ୍ତମ ଉପଗ୍ରହର ନାମ କ'ଣ ?
(କ) ଚାରୋନ୍ (ଖ) ଟିଟାନ୍ (ଗ) ଫୋବୋସ୍ (ଘ) ଗାନିମିଡ୍
7. ଗ୍ରହାଣୁପୁଞ୍ଜ କେଉଁ ଗ୍ରହ ଦୁଇଟିର କକ୍ଷ ମଧ୍ୟରେ ଅବସ୍ଥିତ ?
(କ) ଶନି ଓ ନେପଚୁନ୍ (ଖ) ବୁଧ ଓ ଶୁକ୍ର
(ଗ) ମଙ୍ଗଳ ଓ ବୃହସ୍ପତି (ଘ) ପୃଥିବୀ ଓ ମଙ୍ଗଳ
8. ୟୁରାନ୍‌ସ ଗ୍ରହର ପରିକ୍ରମଣ ସମୟ କେତେ ?
(କ) 1 ପୃଥିବୀ ବର୍ଷ (ଖ) 25.7 ପୃଥିବୀ ବର୍ଷ
(ଗ) 42.4 ପୃଥିବୀ ବର୍ଷ (ଘ) 84 ପୃଥିବୀ ବର୍ଷ
9. ସୂର୍ଯ୍ୟର ନିକଟତମ ଗ୍ରହର ନାମ କ'ଣ ?
(କ) ବୁଧ (ଖ) ଶୁକ୍ର (ଗ) ମଙ୍ଗଳ (ଘ) ପୃଥିବୀ
10. କେଉଁ ଦେଶରେ ଜଣାଥିବା ସବୁଠାରୁ ବଡ଼ ଉଲ୍‌କାପାତ ହୋଇଛି ?
(କ) ଅଷ୍ଟ୍ରେଲିଆ (ଖ) ନାମିବିଆ (ଗ) ତୁର୍କୀ (ଘ) ମିଶର
11. କୁଇପର୍ ବଳୟ କେଉଁଠାରେ ଅବସ୍ଥିତ ?
(କ) ପ୍ଲୁଟୋ କକ୍ଷ ବାହାରେ (ଖ) ବୃହସ୍ପତିର ଦକ୍ଷିଣ ଗୋଲାର୍ଦ୍ଧ
(ଗ) ଶନିର ଉତ୍ତର ଗୋଲାର୍ଦ୍ଧ (ଘ) ସୂର୍ଯ୍ୟର ବିଷୁବରେଖା

12. ସୂର୍ଯ୍ୟ କେଉଁ ପ୍ରକାର ନକ୍ଷତ୍ର ?
(କ) B (ଖ) G (ଗ) K (ଘ) M
13. ପୃଥିବୀର ସମୟ ଅନୁସାରେ ବୁଧର ଗୋଟିଏ ଦିନ କେତେ ?
(କ) 1 ଦିନ (ଖ) 12 ଘଣ୍ଟା (ଗ) 30.5 ଦିନ (ଘ) 58.7 ଦିନ
14. '6000 ଜାତିସଂଘ' କେଉଁ ମହାଜାଗତିକ ବସ୍ତୁ ସହ ସଂଶ୍ଳିଷ୍ଟ ?
(କ) ଆନ୍ତର୍ଜାତୀୟ ମହାକାଶ କେନ୍ଦ୍ର (ଖ) ଧୂମକେତୁ
(ଗ) ଗ୍ରହାଣୁ (ଘ) ଚନ୍ଦ୍ରପୃଷ୍ଠର ଏକ ଜାଗା
15. କେଉଁ ଘଟଣା ସହ 'ହୀରକ ମୁଦି' ଜଡ଼ିତ ?
(କ) ଆଂଶିକ ସୂର୍ଯ୍ୟୋପରାଗ (ଖ) ଚନ୍ଦ୍ରଗ୍ରହଣ
(ଗ) ସମ୍ପୂର୍ଣ୍ଣ ସୂର୍ଯ୍ୟୋପରାଗ (ଘ) ସମୁଦ୍ର ଉପରେ ସୂର୍ଯ୍ୟାସ୍ତ
16. ଏଥିମଧ୍ୟରୁ କେଉଁଟି ମଙ୍ଗଳର ଉପଗ୍ରହ ?
(କ) କାଲିଷ୍ଟୋ (ଖ) ଡେଇମୋସ୍ (ଗ) ହାଇପରିଅନ୍ (ଘ) ମିମାସ୍
17. ଆମେ କାହିଁକି ଚନ୍ଦ୍ରର ଗୋଟିଏ ନିର୍ଦ୍ଦିଷ୍ଟ ପାର୍ଶ୍ୱ ସର୍ବଦା ଦେଖିପାରୁ ?
(କ) ଚନ୍ଦ୍ର ପୃଥିବୀ ଚାରିପଟେ ଥରେ ଘୂରି ଆସିବାକୁ ଯେତିକି ସମୟ ନିଏ, ନିଜ ଅକ୍ଷ ଚାରିପଟେ ଥରେ ଘୂରିବାକୁ ଠିକ୍ ସେତିକି ସମୟ ନିଏ ।
(ଖ) ଏହା ବହୁତ ଧୀରେ ଘୂରେ
(ଗ) ଚନ୍ଦ୍ରର ଅନ୍ୟ ପାର୍ଶ୍ୱଟି କେବଳ ଦିନବେଳେ ପୃଥିବୀ ଆଡ଼କୁ ଥାଏ
(ଘ) ଚନ୍ଦ୍ର ନିଜ ଅକ୍ଷ ଚାରିପଟେ ଘୂରେ ନାହିଁ
18. ସୌରକଳଙ୍କ ଚକ୍ର ଥରେ ପୂର୍ଣ୍ଣ ହେବାକୁ କେତେ ବର୍ଷ ନିଏ ?
(କ) 1 (ଖ) 4 (ଗ) 7 (ଘ) 11
19. ପୃଥିବୀ କିରଣ (Earth Shine) କ'ଣ ?
(କ) ଅସ୍ପଷ୍ଟ ଚନ୍ଦ୍ରକିରଣ
(ଖ) ପୃଥିବୀରୁ ଚନ୍ଦ୍ରକୁ ପ୍ରତିଫଳିତ ହେଉଥିବା ସୂର୍ଯ୍ୟକିରଣ
(ଗ) ଚନ୍ଦ୍ରରୁ ପୃଥିବୀକୁ ପ୍ରତିଫଳିତ ହେଉଥିବା ସୂର୍ଯ୍ୟକିରଣ
(ଘ) ପୃଥିବୀରେ ରାତିରେ ଆଲୋକ ପ୍ରଦୂଷଣ
20. କେଉଁ ଗ୍ରହର ସର୍ବାଧିକ ଉପଗ୍ରହ ଅଛି ?
(କ) ବୃହସ୍ପତି (ଖ) ଶନି (ଗ) ୟୁରାନସ (ଘ) ନେପଚୁନ୍
21. କାସିନି ଡିଭିଜନ କ'ଣ ?
(କ) ଶନି ବଳୟରେ ଥିବା କଳା ଗାର

(ଖ) ଶନିର ଦୁଇ ବଳୟ ମଧ୍ୟରେ ଥିବା ସ୍ଥାନ
(ଗ) ଶନିର ବାୟୁମଣ୍ଡଳ ଏବଂ ତଳ ବଳୟ ମଧ୍ୟରେ ଥିବା ଶୂନ୍ୟସ୍ଥାନ
(ଘ) ଶନି ବଳୟର ଏକ ପ୍ରକାର ଭେଦ

22. ଏଥିମଧ୍ୟରୁ କେଉଁଟି ବୃହସ୍ପତିର ଉପଗ୍ରହ ନୁହେଁ ?
(କ) କାଲିଷ୍ଟୋ (ଖ) ଆଇଓ (ଗ) ଗାଲିଲିଓ (ଘ) ୟୁରୋପା

23. ଏଥିମଧ୍ୟରୁ କେଉଁ ଗ୍ରହର ଶନି ଭଳି ବଳୟ ଅଛି ?
(କ) ୟୁରାନ୍ସ (ଖ) ଶୁକ୍ର (ଗ) ବୁଧ (ଘ) ପ୍ଲୁଟୋ

24. ଏଥିମଧ୍ୟରୁ କେଉଁଟି ସୂର୍ଯ୍ୟର ବାୟୁମଣ୍ଡଳର ଏକ ସ୍ତରକୁ ବୁଝାଏ ?
(କ) ଷ୍ଟ୍ରାଟୋସ୍ଫିୟର (ଖ) ଆଇନୋସ୍ଫିୟର
(ଗ) ଫଟୋସ୍ଫିୟର (ଘ) କେଉଁଟି ନୁହେଁ

25. ପୃଥିବୀ ସହିତ କେଉଁ ଗ୍ରହର ଆକାର ପ୍ରାୟ ସମାନ ?
(କ) ମଙ୍ଗଳ (ଖ) ଶୁକ୍ର (ଗ) ନେପଚୁନ୍ (ଘ) ୟୁରାନ୍ସ

26. ପୃଥିବୀଠାରୁ ସୂର୍ଯ୍ୟର ହାରାହାରି ଦୂରତା କେତେ ?
(କ) 200,000,000 କି.ମି. (ଖ) 150,000,000 କି.ମି.
(ଗ) 500,000,000 କି.ମି. (ଘ) 700,000,000 କି.ମି.

27. ୟୁରାନ୍ସ ଗ୍ରହକୁ କିଏ ଆବିଷ୍କାର କରିଥିଲେ ?
(କ) ଉଇଲିୟମ୍ ହରଶେଲ୍ (ଖ) ଗାଲିଲିଓ
(ଗ) ଜୋହାନ୍ସ କେପଲର୍ (ଘ) କ୍ଲାଇଡ୍ ଟମ୍‌ବର୍ଗ

28. ପ୍ଲୁଟୋର ଆବିଷ୍କର୍ତ୍ତା କିଏ ?
(କ) ଗାଲିଲିଓ (ଖ) କ୍ଲାଇଡ୍ ଟମ୍‌ବର୍ଗ
(ଗ) ଏଡମଣ୍ଡ ହ୍ୟାଲେ (ଘ) ଜନ୍ ଆଦାମ୍ସ

29. କେଉଁ ଗ୍ରହକୁ କୁଆଁତରା କୁହାଯାଏ ?
(କ) ମଙ୍ଗଳ (ଖ) ଶୁକ୍ର (ଗ) ବୃହସ୍ପତି (ଘ) ଶନି

30. ପୃଥିବୀ ଗୋଟିଏ ବଡ଼ ଚୁମ୍ବକ ଭଳି କାମ କରେ, ଏହା କିଏ ପ୍ରଥମେ ପ୍ରକାଶ କରିଥିଲେ ?
(କ) ଥେଲ୍ସ (ଖ) ମାଇକେଲ ଫାରାଡ଼େ
(ଗ) ଉଇଲିୟମ୍ ଗିଲ୍‌ବର୍ଟ (ଘ) ଆର୍କିମିଡିସ୍

31. ପୃଥିବୀକୁ ଘେରି ରହିଥିବା ବିକିରଣ ବଳୟକୁ କେଉଁ ବୈଜ୍ଞାନିକ ଆବିଷ୍କାର କରିଥିଲେ ? ତାଙ୍କ ନାମରେ ଏହି ବଳୟର ନାମକରଣ ହୋଇଛି –
(ଖ) କାର୍ଲ ସାଗନ୍ (ଖ) ଆଇଜାକ୍ ନିଉଟନ୍
(ଗ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍ (ଘ) ଜେମସ ଭାନ୍ ଆଲେନ୍

32. ବୃହସ୍ପତିର ବୃହତ୍ତମ ଉପଗ୍ରହ କିଏ ?
(କ) ୟୁରୋପା (ଖ) ଆଇଓ (ଗ) ଗାନିମେଡ୍ (ଘ) କାଲିଷ୍ଟୋ

33. ସୂର୍ଯ୍ୟରେ କେଉଁ ମୌଳିକ ପଦାର୍ଥ ସର୍ବାଧିକ ପରିମାଣରେ ଅଛି ?
(କ) ଉଦ୍‌ଜାନ (ଖ) ହିଲିୟମ୍ (ଗ) ଅମ୍ଳଜାନ (ଘ) ଯବକ୍ଷାରଜାନ

34. 'ଅରୋରା' ନିମ୍ନଲିଖିତ ମଧ୍ୟରୁ କାହାସହିତ ସଂଶ୍ଳିଷ୍ଟ ?
(କ) ପୂର୍ଣ୍ଣିମା (ଖ) ଉଲ୍‌କାବୃଷ୍ଟି (ଗ) ସୌରବାୟୁ (ଘ) ସୁପରନୋଭା

35. ସିରସ୍ (Ceres) କେଉଁ ପ୍ରକାର ମହାଜାଗତିକ ବସ୍ତୁ ?
(କ) ବାମନ ଗ୍ରହ (ଖ) ଧୂମକେତୁ
(ଗ) ଚନ୍ଦ୍ରର ଗର୍ତ୍ତ (ଘ) ନେପଚୁନ୍‌ର ଉପଗ୍ରହ

36. ଯଦି ଗୋଟିଏ ବର୍ଷରେ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ମିଶି ସାତୋଟି ହୁଏ, ତାହାହେଲେ–
(କ) 3ଟି ସୂର୍ଯ୍ୟୋପରାଗ ଓ 4ଗୋଟି ଚନ୍ଦ୍ରଗ୍ରହଣ କିମ୍ୱା 2ସୂର୍ଯ୍ୟୋପରାଗ ଓ 5 ଚନ୍ଦ୍ରଗ୍ରହଣ
(ଖ) 5ଟି ସୂର୍ଯ୍ୟୋପରାଗ ଓ 2ଗୋଟି ଚନ୍ଦ୍ରଗ୍ରହଣ କିମ୍ୱା 4ସୂର୍ଯ୍ୟୋପରାଗ, 3 ଚନ୍ଦ୍ରଗ୍ରହଣ
(ଗ) 6 ଟି ସୂର୍ଯ୍ୟୋପରାଗ ଓ 1 ଗୋଟି ଚନ୍ଦ୍ରଗ୍ରହଣ କିମ୍ୱା 7 ସୂର୍ଯ୍ୟୋପରାଗ ଓ କୌଣସି ଚନ୍ଦ୍ରଗ୍ରହଣ ନୁହେଁ ।
(ଘ) ଏହା ଭୁଲ, ଗୋଟିଏ ବର୍ଷରେ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ମିଶି ସାତୋଟି ହୋଇପାରିବ ନାହିଁ ।

37. ସୌର ବାୟୁ କାହାକୁ ନେଇ ଗଠିତ ?
(କ) ସୌର ବିକିରଣ
(ଖ) ସୌର ବିକିରଣଦ୍ୱାରା ଉଦ୍ଦୀପିତ ଆନ୍ତଃଗ୍ରହ କଣିକା
(ଗ) ସୂର୍ଯ୍ୟର ଚୁମ୍ବକୀୟ କ୍ଷେତ୍ରଦ୍ୱାରା ଉଦ୍ଦୀପିତ ଆନ୍ତଃଗ୍ରହ କଣିକା
(ଘ) ସୂର୍ଯ୍ୟ ବାୟୁମଣ୍ଡଳରୁ ନିର୍ଗତ କଣିକା

38. ସୌରଜଗତର କେଉଁ ଗ୍ରହରେ ସର୍ବାଧିକ ତାପମାତ୍ରା ପାର୍ଥକ୍ୟ ଦେଖାଦିଏ ?
(କ) ବୃହସ୍ପତି (ଖ) ମଙ୍ଗଳ (ଗ) ପୃଥିବୀ (ଘ) ବୁଧ

39. ବୃହସ୍ପତିରେ 'ଲାଲଚକ୍ଷୁ' ଅଛି, ସେହିପରି 'ନୀଳଚକ୍ଷୁ' କେଉଁ ଗ୍ରହରେ ଅଛି ?
(କ) ଶୁକ୍ର (ଖ) ମଙ୍ଗଳ (ଗ) ଶନି (ଘ) ନେପଚୁନ

40. ପ୍ରତ୍ୟେକ ଗ୍ରହ ଇଲିପ୍‌ଟିକାଲ କକ୍ଷରେ ଘୂରିଥାନ୍ତି । କେଉଁ ଗ୍ରହ ସବୁଠାରୁ କମ୍ ଇଲିପ୍‌ଟିକାଲ କିମ୍ୱା ସବୁଠାରୁ ବେଶି ବୃତ୍ତାକାର କକ୍ଷରେ ଘୂରୁଛି ?
(କ) ବୁଧ (ଖ) ଶୁକ୍ର (ଗ) ୟୁରାନ୍‌ସ (ଘ) ପ୍ଲୁଟୋ

41. ପ୍ରତ୍ୟେକ ନକ୍ଷତ୍ର ଇନ୍ଧନ ଶେଷ ହେବାପରେ ମୃତ୍ୟୁମୁଖରେ ପଡେ । ମୃତ୍ୟୁପରେ ଆମ ସୂର୍ଯ୍ୟ କେଉଁ ବସ୍ତୁରେ ପରିଣତ ହେବ ?
(କ) ଶ୍ୱେତ ବାମନ (ଖ) ନିଉଟନ୍ ତାରକା
(ଗ) କୃଷ୍ଣ ଗର୍ତ୍ତ (ଘ) ଏହା ସମ୍ପୂର୍ଣ୍ଣରୂପେ ଲୋପ ପାଇଯିବ

42. ନିକଟ ଅତୀତରେ କେଉଁ ବର୍ଷ ସୂର୍ଯ୍ୟରେ ସର୍ବାଧିକ ସୌରକଳଙ୍କ ଦେଖାଦେଇଥିଲା ?
(କ) 1997 (ଖ) 1999
(ଗ) 2001 (ଘ) ଏହା ସମାନ ସ୍ତରରେ ରହିଛି

43. ଆକାର ଅନୁଯାୟୀ ୟୁରାନ୍ସ ହେଉଛି ସୌରଜଗତ୍‌ର ତୃତୀୟ ବୃହତ୍ତମ ଗ୍ରହ, ବସ୍ତୁତ୍ୱ ଅନୁଯାୟୀ କେଉଁ ଗ୍ରହ ସୌରଜଗତର ତୃତୀୟ ବୃହତ୍ତମ ?
(କ) ବୃହସ୍ପତି (ଖ) ଶନି (ଗ) ୟୁରାନ୍ସ (ଘ) ନେପଚୁନ୍

44. ସୌରଜଗତର ବୃହତ୍ତମ ଉପଗ୍ରହ କେଉଁ ଗ୍ରହକୁ ପରିକ୍ରମଣ କରୁଛି ?
(କ) ବୃହସ୍ପତି (ଖ) ଶନି (ଗ) ୟୁରାନ୍ସ (ଘ) ନେପଚୁନ୍

45. ଆକାଶ-ଗଙ୍ଗା ଗାଲାକ୍ସିର କେନ୍ଦ୍ର ଚାରିପଟେ ସୂର୍ଯ୍ୟ ଥରେ ଘୂରି ଆସିବାର ସମୟକୁ କ'ଣ କୁହାଯାଏ ?
(କ) ଅଧିବର୍ଷ (ଖ) ମହାଜାଗତିକ ବର୍ଷ
(ଗ) ଆଲୋକ ବର୍ଷ (ଘ) ଏଥିରୁ କେଉଁଟି ନୁହେଁ

46. ବୃହସ୍ପତିର କେଉଁ ଉପଗ୍ରହରେ ଅଧିକ ଆଗ୍ନେୟଗିରି ଉଦ୍‌ଗିରଣ ହୋଇଥାଏ ?
(କ) ଗାନିମେଡ୍ (ଖ) କାଲିଷ୍ଟୋ (ଗ) ଆଇଓ (ଘ) ୟୁରୋପା

47. କେଉଁ ଗ୍ରହ ଅଧିକ ବେଗରେ ଘୂରୁଛି ?
(କ) ପୃଥିବୀ (ଖ) ବୃହସ୍ପତି (ଗ) ୟୁରାନ୍ସ (ଘ) ବୁଧ

48. ପ୍ଲୁଟୋ କେଉଁ ଶ୍ରେଣୀର ଜ୍ୟୋତିଷ୍କ ?
(କ) ଗ୍ରହ (ଖ) ଉପଗ୍ରହ (ଗ) ବାମନ ଗ୍ରହ (ଘ) ଗୌଣ ଗ୍ରହ

49. ଶନି ଗ୍ରହର ସାନ୍ଦ୍ରତା ହେଉଛି ସବୁଠାରୁ କମ୍, କେଉଁ ଗ୍ରହର ସାନ୍ଦ୍ରତା ସବୁଠାରୁ ଅଧିକ ?
(କ) ବୁଧ (ଖ) ପୃଥିବୀ (ଗ) ବୃହସ୍ପତି (ଘ) ପ୍ଲୁଟୋ

50. ପ୍ଲୁଟୋର ଏକମାତ୍ର ଉପଗ୍ରହର ନାମ କ'ଣ ?
(କ) ଫୋବୋସ୍ (ଖ) ଚାରୋନ୍ (ଗ) ମିରାଣ୍ଡା (ଘ) ୟୁରୋପା

51. ବୁଧର କେତୋଟି ଉପଗ୍ରହ ଅଛି ?
(କ) 10 (ଖ) 2 (ଗ) 3 (ଘ) କିଛି ନାହିଁ

52. ମଙ୍ଗଳ ଓ ବୃହସ୍ପତି କକ୍ଷ ମଧ୍ୟରେ ସୂର୍ଯ୍ୟକୁ ପରିକ୍ରମଣ କରୁଥିବା କ୍ଷୁଦ୍ର ବସ୍ତୁଗୁଡ଼ିକୁ କ'ଣ କୁହାଯାଏ ?
(କ) ଗ୍ରହାଣୁ (ଖ) ଧୂମକେତୁ (ଗ) ଉପଗ୍ରହ (ଘ) ଉଲ୍କା

53. ସୂର୍ଯ୍ୟ ଓ ଚନ୍ଦ୍ରକୁ ଛାଡ଼ିଦେଲେ ଆକାଶରେ ଅନ୍ୟ କେଉଁ ଜ୍ୟୋତିଷ୍କ ସବୁଠାରୁ ଉଜ୍ଜ୍ୱଳ ଦେଖାଯାଏ ?
(କ) ଶୁକ୍ର (ଖ) ବୁଧ (ଗ) ଟିଟାନ୍ (ଘ) ଲୁବ୍ଧକ

54. ଆବିଷ୍କୃତ ହୋଇଥିବା ବୃହତ୍ତମ ଗ୍ରହାଣୁର ନାମ କ'ଣ ? ନିକଟରେ ଏହାକୁ ବାମନ ଗ୍ରହର ଆଖ୍ୟା ଦିଆଯାଇଛି --
(କ) ପୋରସ୍ (ଖ) ସିରସ୍ (ଗ) ଟିଟାନ୍ (ଘ) ଜେନିମେଡ୍

55. କେଉଁ ଗ୍ରହର ଦୁଇଟି ବଡ଼ ଉପଗ୍ରହ ହେଉଛି ଟ୍ରିଟନ୍ ଓ ନେରିଡ୍ ?
(କ) ଶନି (ଖ) ନେପଚୁନ୍ (ଗ) ପ୍ଲୁଟୋ (ଘ) ୟୁରାନ୍‌ସ

56. ମଙ୍ଗଳ ବାୟୁମଣ୍ଡଳରେ 95 ପ୍ରତିଶତରୁ ଅଧିକ କେଉଁ ଗ୍ୟାସ୍ ଅଛି ?
(କ) ଅଙ୍ଗାରକାମ୍ଳ (ଖ) ଯବକ୍ଷାରଯାନ
(ଗ) ଏମୋନିଆ (ଘ) ସଲଫର ଡାଇଅକ୍‌ସାଇଡ୍

57. କେଉଁ ଗ୍ରହପୃଷ୍ଠରେ 'କ୍ୟାଲୋରିସ୍ ବେସିନ୍' ଅଛି ?
(କ) ପୃଥିବୀ (ଖ) ଶୁକ୍ର (ଗ) ୟୁରାନ୍‌ସ (ଘ) ବୁଧ

58. 1846 ମସିହାରେ କିଏ ନେପଚୁନ୍‌କୁ ଆବିଷ୍କାର କରିଥିଲେ ?
(କ) ଜନ୍ କାଉଚ୍ (ଖ) ଅର୍ବେନ୍ ଲେ ଭେରିୟର
(ଗ) ଜୋହାନ୍ ଗାଲେ (ଘ) ଉଇଲିୟମ୍ ହରଶେଲ୍

59. ଓବେରନ, ଟିଟାନିଆ ଓ ଏରିଏଲ୍ କେଉଁ ଗ୍ରହର ଉପଗ୍ରହ ?
(କ) ନେପଚୁନ୍ (ଖ) ପ୍ଲୁଟୋ (ଗ) ଶନି (ଘ) ୟୁରାନ୍‌ସ

60. ମହାକାଶଚାରୀମାନେ କେଉଁ ଗ୍ରହରେ ଓହ୍ଲାଇଲେ ଧୂଳିଝଡ଼ର ସମ୍ମୁଖୀନ ହେବାର ଆଶଙ୍କା ଅଛି ?
(କ) ମଙ୍ଗଳ (ଖ) ଶୁକ୍ର (ଗ) ବୃହସ୍ପତି (ଘ) ବୁଧ

61. 1994 ମସିହାରେ ବୃହସ୍ପତି ସହ ଧକ୍କା ହୋଇଥିବା ଧୂମକେତୁର ନାମ କ'ଣ ?
(କ) ହେଲ୍-ବପ୍ (ଖ) ହ୍ୟାକୁଟେକ୍
(ଗ) ହ୍ୟାଲୋ (ଘ) ସୁମେକର-ଲେଭି-୨

62. ହାଲେ ଧୂମକେତୁ କେତେ ବର୍ଷରେ ଥରେ ପୃଥିବୀକୁ ଦେଖାଯାଏ ?
(କ) 12 (ଖ) 76 (ଗ) 112 (ଘ) 300

63. ସାଧାରଣତଃ ଧୂମକେତୁ କାହାକୁ ନେଇ ଗଠିତ ?
(କ) ବରଫ ଓ ଧୂଳିକଣା (ଖ) ପଥର
(ଗ) ଗ୍ରହାଣୁ ପରି କଠିନ ପଥର (ଘ) ଗ୍ୟାସ୍

64. ଧୂମକେତୁର ଲାଞ୍ଜ ଦୁଇ ପ୍ରକାର – ଗୋଟିଏ ହେଉଛି ଆୟନ୍ ଲାଞ୍ଜ, ଅନ୍ୟ ପ୍ରକାରଟି କ'ଣ ?
(କ) ବାଦଲ ଲାଞ୍ଜ (ଖ) ଧୂଳି ଲାଞ୍ଜ
(ଗ) ମହାଜାଗତିକ ଲାଞ୍ଜ (ଘ) ଏଥିରୁ କେଉଁଟି ନୁହେଁ

65. ସୌରବର୍ଣ୍ଣାଳିରେ ଥିବା କଳାଗାରକୁ କିଏ ଆବିଷ୍କାର କରିଥିଲେ ?
(କ) ଗାଲିଲିଓ (ଖ) ନିଉଟନ୍
(ଗ) ଭାନ୍ ଆଲେନ୍ (ଘ) ଜୋସେଫ୍ ଫ୍ରନ୍‌ହୋଫର

66. ସୌରଜଗତର ବୃହତ୍ତମ ପର୍ବତ 'ଅଲିମ୍ପସ୍ ମୋନ୍‌ସ' କେଉଁ ଗ୍ରହରେ ଅବସ୍ଥିତ ?
(କ) ପୃଥିବୀ (ଖ) ବୃହସ୍ପତି (ଗ) ଶନି (ଘ) ମଙ୍ଗଳ

67. ଆମ ସୌରଜଗତର କେବଳ ଦୁଇଟି ଗ୍ରହ ପୂର୍ବରୁ ପଶ୍ଚିମକୁ ଘୂରେ, ଏହାର ନାମ କ'ଣ ?
(କ) ଶୁକ୍ର ଓ ୟୁରାନ୍‌ସ (ଖ) ଶୁକ୍ର ଓ ମଙ୍ଗଳ
(ଗ) ନେପଚୁନ୍ ଓ ୟୁରାନ୍‌ସ (ଘ) ବୃହସ୍ପତି ଓ ଶନି

68. ରାତିର ଆକାଶରେ ଚନ୍ଦ୍ରକୁ ଛାଡ଼ିଦେଲେ ସବୁଠାରୁ ଉଜ୍ଜ୍ୱଳ ଜ୍ୟୋତିଷ୍କର ନାମ କ'ଣ ?
(କ) ମଙ୍ଗଳ (ଖ) ଶୁକ୍ର (ଗ) ବୃହସ୍ପତି (ଘ) ଶନି

69. ନିଜ ଅକ୍ଷ ଚାରିପଟେ ଘୂରି ଆସିବା ପାଇଁ କେଉଁ ଗ୍ରହ ସବୁଠାରୁ କମ୍ ସମୟ ନିଏ ?
(କ) ପୃଥିବୀ (ଖ) ବୃହସ୍ପତି (ଗ) ବୁଧ (ଘ) ଶୁକ୍ର

70. ସୌରଜଗତର ୨୨ ପ୍ରତିଶତରୁ ଅଧିକ ବସ୍ତୁତ୍ୱ କାହାର ଅଛି ?
(କ) ସୂର୍ଯ୍ୟ (ଖ) ବୃହସ୍ପତି (ଗ) ଗ୍ରହାଣୁପୁଞ୍ଜ (ଘ) ପୃଥିବୀ

71. ମଙ୍ଗଳ ଗ୍ରହର କେତୋଟି ଉପଗ୍ରହ ଅଛି ?
(କ) 1 (ଖ) 2 (ଗ) 3 (ଘ) କିଛି ନାହିଁ

72. ଚନ୍ଦ୍ରରୁ ଆଲୋକ ଆସି ପୃଥିବୀରେ ପହଞ୍ଚିବାପାଇଁ କେତେ ସମୟ ନିଏ ?
(କ) 1.3 ସେକେଣ୍ଡ (ଖ) 13 ସେକେଣ୍ଡ
(ଗ) 1.3 ମିନିଟ୍ (ଘ) 13 ମିନିଟ୍

73. ସୂର୍ଯ୍ୟର ବାହ୍ୟତମ ସ୍ତର 'କୋରୋନା'କୁ କେତେବେଳେ ଦେଖିହୁଏ ?
(କ) ସମ୍ପୂର୍ଣ୍ଣ ସୂର୍ଯ୍ୟୋପରାଗ (ଖ) ଆଂଶିକ ସୂର୍ଯ୍ୟୋପରାଗ
(ଗ) ଚନ୍ଦ୍ରଗ୍ରହଣ (ଘ) କେବେ ନୁହେଁ

74. ଚନ୍ଦ୍ରଗ୍ରହଣ ବେଳେ ପୃଥିବୀର କେଉଁ ପ୍ରକାର ଛାୟା ଦେଖାଯାଏ ?
(କ) କୌଣିକ ଛାୟା (ଖ) ଗୋଲାକାର ଛାୟା
(ଗ) ଇଲିପ୍ଟିକାଲ୍ ଛାୟା (ଘ) କୌଣସି ପ୍ରକାର ଛାୟା ନୁହେଁ

75. ପରିସୂର୍ଯ୍ୟରେ ପୃଥିବୀ ସୂର୍ଯ୍ୟଠାରୁ ୧୪୭ ମିଲିୟନ୍ କି.ମି. ଦୂରରେ ଥାଏ, ଅପସୂର୍ଯ୍ୟରେ ସେମାନଙ୍କ ମଧ୍ୟରେ ଥିବା ଦୂରତା କେତେ ? (ପୃଥିବୀ ସୂର୍ଯ୍ୟ ଚାରିପଟେ ଉପବୃତ୍ତାକାର କକ୍ଷରେ ଘୂରିଥାଏ । ସୂର୍ଯ୍ୟଠାରୁ ପୃଥିବୀ କକ୍ଷର ନିମ୍ନତମ ଦୂରତାକୁ ପରିସୂର୍ଯ୍ୟ ଓ ସର୍ବୋଚ୍ଚମ ଦୂରତାକୁ ଅପସୂର୍ଯ୍ୟ କୁହାଯାଏ ।)
(କ) 149 ମିଲିୟନ୍ କି.ମି. (ଖ) 152 ମିଲିୟନ୍ କି.ମି.
(ଗ) 170 ମିଲିୟନ୍ କି.ମି. (ଘ) 155 ମିଲିୟନ୍ କି.ମି.

76. ସୂର୍ଯ୍ୟର ବସ୍ତୁତ୍ୱ କେତେ ?
(କ) $2 \times 10^{20}$ କି.ଗ୍ରା. (ଖ) $2 \times 10^{30}$ କି.ଗ୍ରା
(ଗ) $5 \times 10^{20}$ କି.ଗ୍ରା. (ଘ) $5 \times 10^{30}$ କି.ଗ୍ରା

77. ରାତ୍ରିରେ ବୁଧର ତାପମାତ୍ରା କେତେ ?
(କ) 450 ଡିଗ୍ରୀ ସେଲସିୟସ୍ (ଖ) ଶୂନ ଡିଗ୍ରୀ ସେଲ୍‌ସିୟସ୍
(ଗ) –180 ଡିଗ୍ରୀ ସେଲସିୟସ୍ (ଘ) 273 ଡିଗ୍ରୀ ସେଲସିୟସ୍

78. କେଉଁ ଗ୍ରହକୁ ଲୋହିତ ଗ୍ରହ କୁହାଯାଏ ?
(କ) ଶୁକ୍ର (ଖ) ମଙ୍ଗଳ (ଗ) ବୃହସ୍ପତି (ଘ) ଶନି

79. ଶୁକ୍ର ଗ୍ରହର ବାୟୁମଣ୍ଡଳରେ ଥିବା ମୁଖ୍ୟ ଗ୍ୟାସ୍ କ'ଣ ?
(କ) ଅମ୍ଳଜାନ (ଖ) ଯବକ୍ଷାରଜାନ (ଗ) ଉଦ୍‌ଜାନ (ଘ) ଅଙ୍ଗାରକାମ୍ଳ

80. ଶନିର ବୃହତ୍ତମ ଉପଗ୍ରହର ନାମ କ'ଣ ?
(କ) ଟିଟାନ୍ (ଖ) ଫୋବୋସ୍ (ଗ) ଡିମୋସ୍ (ଘ) ୟୁରୋପା

81. ରୋମାନ୍‌ମାନଙ୍କର ସୌନ୍ଦର୍ଯ୍ୟ ଓ ପ୍ରେମର ଦେବତାଙ୍କ ନାମାନୁସାରେ କେଉଁ ଗ୍ରହର ନାମକରଣ କରାଯାଇଛି ?
(କ) ଶନି (ଖ) ବୃହସ୍ପତି (ଗ) ଶୁକ୍ର (ଘ) ମଙ୍ଗଳ

82. ଶନିର ବଳୟ କିଏ ଆବିଷ୍କାର କରିଥିଲେ ?
(କ) ହିଉଜେନ୍ (ଖ) ଗାଲିଲିଓ (ଗ) ନିଉଟନ୍ (ଘ) କାସିନି

83. ପ୍ଲୁଟୋର ହାରାହାରି ତାପମାତ୍ରା କେତେ ?
(କ) ଶୂନ କେଲଭିନ୍ (ଖ) 273 କେଲଭିନ୍
(ଗ) 40 କେଲଭିନ୍ (ଘ) 80 କେଲଭିନ୍

84. ବୃହସ୍ପତିର ପ୍ରଥମ ଚାରୋଟି ଉପଗ୍ରହକୁ କିଏ ଆବିଷ୍କାର କରିଥିଲେ ?
(କ) ଟଲେମି (ଖ) ଗାଲିଲିଓ (ଗ) କୋପରନିକସ (ଘ) କେପଲର

85. ହାଲେ ଧୂମକେତୁ ଶେଷଥର ପାଇଁ କେଉଁ ମସିହାରେ ଦେଖାଦେଇଥିଲା ?
(କ) 1986 (ଖ) 1987 (ଗ) 1988 (ଘ) 1989

86. ସପ୍ତମ ଗ୍ରହ ୟୁରାନ୍ସ କେଉଁ ମସିହାରେ ଆବିଷ୍କୃତ ହୋଇଛି ?
(କ) 1781 (ଖ) 1846 (ଗ) 1915 (ଘ) 1930

87. ପ୍ଲୁଟୋର ଉପଗ୍ରହ ଚାରୋନ୍ କେବେ ଆବିଷ୍କୃତ ହେଲା ?
(କ) 1930 (ଖ) 1950 (ଗ) 1978 (ଘ) 1990

88. ମଙ୍ଗଳ ଗ୍ରହରେ ଉନ୍ନତ ସଭ୍ୟତା ଦର୍ଶାଇ କେଉଁ ଲେଖକ 'ୱାର ଅଫ୍ ୱାର୍ଲଡସ୍' ବିଜ୍ଞାନ ଉପନ୍ୟାସ ଲେଖିଛନ୍ତି ?
(କ) ଏଚ୍.ଜି. ୱେଲ୍ସ (ଖ) ଆର୍ଥର ସି. କ୍ଲାର୍କ
(ଗ) କାର୍ଲ ସାଗନ୍ (ଗ) ଉଇଲିୟମ୍ ହକିଙ୍ଗ୍

89. ବୃହସ୍ପତିର ଦ୍ୱିତୀୟ ବୃହତ୍ତମ ଉପଗ୍ରହର ନାମ କ'ଣ ?
(କ) ୟୁରୋପା (ଖ) ଆଇଓ (ଗ) ଗାନିମେଡ୍ (ଘ) କାଲିଷ୍ଟୋ

90. ପୃଥିବୀର ଚୁମ୍ବକୀୟ କ୍ଷେତ୍ରର କେତେଗୁଣ ଶନିର ଚୁମ୍ବକୀୟ କ୍ଷେତ୍ର ?
(କ) 500 (ଖ) 800 (ଗ) 1000 (ଘ) 1400

91. ଉପାଦାନକୁ ନେଇ କାହାକୁ ଅପରିଷ୍କାର ବରଫ ପେଣ୍ଡୁ କୁହାଯାଏ ?
(କ) ଗ୍ରହାଣୁ (ଖ) ଉଲ୍‌କା (ଗ) ଧୂମକେତୁ (ଘ) ଏଥିରୁ କୌଣସିଟି ନୁହେଁ

92. ସୂର୍ଯ୍ୟର ଦୃଶ୍ୟମାନ ପୃଷ୍ଠ ଆଲୋକମଣ୍ଡଳର ତାପମାତ୍ରା କେତେ ?
(କ) 2900 ଡିଗ୍ରୀ (ଖ) 8700 ଡିଗ୍ରୀ
(ଗ) 5500 ଡିଗ୍ରୀ (ଘ) 6300 ଡିଗ୍ରୀ

93. କେଉଁ ଗ୍ରହରେ ଗୋଟିଏ ଦିନ ଗୋଟିଏ ବର୍ଷଠାରୁ ବଡ଼ ?
(କ) ବୁଧ (ଖ) ଶୁକ୍ର (ଗ) ବୃହସ୍ପତି (ଘ) ଶନି

94. ପ୍ରଥମ ଆବିଷ୍କୃତ ଓ ବୃହତ୍ତମ ଗ୍ରହାଣୁ ହେଉଛି ସିରସ୍, ଏହାକୁ କିଏ ଆବିଷ୍କାର କରିଥିଲେ ?
(କ) ଜୋହାନ୍ ବୋଡେ (ଖ) ଚାର୍ଲସ୍ ମେସିୟର
(ଗ) ଜିରାଲ୍ଡ କୁଇପର (ଘ) ଜିଉସେପେ ପିଆଜ୍ଜି

95. ମଙ୍ଗଳର ଦୁଇଟି ଉପଗ୍ରହ ଫୋବ୍ସ ଓ ଡିମୋସ୍ 1877 ମସିହାରେ ଆବିଷ୍କୃତ ହେଲା, ଏହି ଦୁଇଟିର ଆବିଷ୍କାରକ କିଏ ?
(କ) ଗାଲିଲିଓ (ଖ) ଜିରାଲ୍ଡ଼ କୁଇପର
(ଗ) ଉଇଲିୟମ୍ ହରଶେଲ୍ (ଘ) ଆସାଫ୍ ହଲ୍

96. କେଉଁ ପ୍ରଥମ ଭାରତୀୟଙ୍କ ନାମ ଗୋଟିଏ ଧୂମକେତୁ ସହ ସଂଶ୍ଳିଷ୍ଟ ଅଛି ? ସେ ଏହି ଧୂମକେତୁକୁ ଆବିଷ୍କାର କରିଥିଲେ –
(କ) ଆର୍ଯ୍ୟଭଟ୍ଟ (ଖ) ବରାହମିହିର
(ଗ) ଏମ୍.କେ. ଭାଇନୁ ବାପୁ (ଘ) ସାମନ୍ତ ଚନ୍ଦ୍ରଶେଖର

97. ଧୂମକେତୁର କକ୍ଷ କେଉଁ ଜ୍ୟୋତିର୍ବିଦ୍ ପ୍ରଥମେ ଗଣନା କରିଥିଲେ ? ନିଉଟନ୍ଙ୍କ ମହାକର୍ଷଣ ନିୟମକୁ ବ୍ୟବହାର କରି ସେ ଏହି ଗଣନା କରିଥିଲେ –
(କ) ଏଡ଼ମଣ୍ଡ୍ ହ୍ୟାଲେ (ଖ) ଫ୍ରାନ୍‌ସିସ ବେଇଲି
(ଗ) ଜିଓଭାନି କାସିନି (ଘ) ଜନ୍ ଫ୍ଲାମ୍‌ଷ୍ଟିଡ୍

98. ନେପଚୁନ୍‌ର ବୃହତ୍ତମ ଉପଗ୍ରହ ହେଉଛି ଟ୍ରିଟନ୍, ଏହାକୁ କିଏ ଆବିଷ୍କାର କରିଥିଲେ ?
(କ) ଉଇଲିୟମ୍ ଲାସେଲ୍ (ଖ) ଜର୍ଜ ଫିଲିପ୍‌ସ ବଣ୍ଡ୍
(ଗ) ଜେମସ୍ କ୍ରିଷ୍ଟି (ଘ) ଜନ୍ ଆଦାମ୍‌ସ

99. ମଙ୍ଗଳ ଗ୍ରହରେ ସରଳରେଖା ଚିହ୍ନକୁ କାନାଲି ବା କେନାଲ ଭାବେ କିଏ ପ୍ରଥମେ ପ୍ରକାଶ କରିଥିଲେ ? ଏଥିରୁ ଅନୁମାନ କରାଗଲା ଯେ ମଙ୍ଗଳ ଗ୍ରହରେ ଜୀବଜଗତ ଅଛି –
(କ) ଆସାଫ ହଲ (ଖ) ଜୋହାନ୍ ଡାନିଏଲ୍ ଟିଟିୟସ୍
(ଗ) ଜି. ସିଆପାରେଲି (ଘ) ପର୍ସିଭାଲ୍ ଲୋୱେଲ

100. ସୌରବର୍ଣ୍ଣାଳିରେ ଥିବା କଳାଗାରକୁ କିଏ ପ୍ରଥମେ ବୁଝାଇଥିଲେ ?
(କ) ମେଘନାଦ ସାହା (ଖ) ଆଇଜାକ ନିଉଟନ୍
(ଗ) ଜୋସେଫ ଭନ୍ ଫ୍ରାନ୍‌ହୋଫର (ଘ) ରବର୍ଟ ମିଲିକାନ୍

101. ସୂର୍ଯ୍ୟ ସମ୍ମୁଖରେ କୌଣସି ଗ୍ରହର ସଞ୍ଚାରକୁ ପ୍ରଥମେ କିଏ ପର୍ଯ୍ୟବେକ୍ଷଣ କରିଥିଲେ ?
(କ) ଜୋହନ୍‌ସ କେପଲର (ଖ) ଜୋହାନ୍ ବେୟର
(ଗ) ପିଏରେ ଗାସେନ୍ଦି (ଘ) ଟାଇକୋ ବ୍ରାହେ
102. କିଏ ପ୍ରଥମେ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର ନିର୍ମାଣ କରିଥିଲେ ?
(କ) କାର୍ଲ ଜାନ୍‌ସ୍କି (ଖ) ଗ୍ରୋଟେ ରେବର
(ଗ) ବର୍ଣ୍ଣାଡ଼୍ ଲୋଭେଲ୍ (ଘ) ଲେଓ୍ୱିସ୍ ରୁଥରଫୋର୍ଡ଼
103. ଲିପିବଦ୍ଧ କରାଯାଇଥିବା କେଉଁ ପ୍ରଥମ ଧୂମକେତୁ ଦେଖାଦେଇ ପୁଣି ଆର ଥରକୁ ଆସିବା ବେଳକୁ ଦୁଇଖଣ୍ଡ ହୋଇଯାଇଥିଲା ?
(କ) ଆଲକକ୍ (ଖ) ବେନେଟ୍ (ଗ) ବେଲା (ଘ) କୋହୋଟେକ୍
104. ସୌରଜଗତର କେଉଁଠାରେ 'କୁଇପର ବଳୟ' ଅବସ୍ଥିତ ?
(କ) ମଙ୍ଗଳ ଓ ବୃହସ୍ପତି କକ୍ଷ ମଝିରେ
(ଖ) ଶନି କକ୍ଷ ଚାରିପଟେ
(ଗ) ଶନି ଓ ୟୁରାନ୍‌ସ କକ୍ଷ ମଝିରେ
(ଘ) ପ୍ଲୁଟୋ କକ୍ଷ ଚାରିପଟେ
105. ଭାରତର ମହାକାଶଚାରିଣୀ କଳ୍ପନା ଚାଓ୍ୱଲାଙ୍କ ନାମରେ କେଉଁ ଏକ ମହାକାଶ ପିଣ୍ଡର ନାମକରଣ କରାଯାଇଛି ?
(କ) ଆପୋଲୋ ବସ୍ତୁପିଣ୍ଡ (ଖ) କୁଇପର ବଳୟ ବସ୍ତୁପିଣ୍ଡ
(ଗ) ଧୂମକେତୁ (ଘ) ଗ୍ରହାଣୁ
106. ଚନ୍ଦ୍ରର ବୟସ କେତେ ?
(କ) 460 କୋଟି ବର୍ଷ (ଖ) 360 କୋଟି ବର୍ଷ
(ଗ) 260 କୋଟି ବର୍ଷ (ଘ) 560 କୋଟି ବର୍ଷ
107. ଶୁକ୍ର ଗ୍ରହର ଅଧିକ ତାପମାତ୍ରା ପାଇଁ ଏହାର ବାୟୁମଣ୍ଡଳରେ ଥିବା କେଉଁ ଗ୍ୟାସ୍ ମୁଖ୍ୟତଃ ଦାୟୀ ?
(କ) ମିଥେନ୍ (ଖ) ଯବକ୍ଷାରଜାନ
(ଗ) ଏମୋନିଆ (ଘ) ଅଙ୍ଗାରକାମ୍ଳ
108. କେଉଁ ଗ୍ରହର ବଳୟକୁ (ଭୋୟେଜର–1) ମହାକାଶଯାନ ଦ୍ୱାରା ଆବିଷ୍କୃତ କରାଗଲା ?
(କ) ବୃହସ୍ପତି (ଖ) ଶନି (ଗ) ୟୁରାନସ୍ (ଘ) ନେପଚୁନ୍

109. ଏହା ହେଉଛି ଏକମାତ୍ର ଗ୍ରହ, ଯାହାର ଆପେକ୍ଷିକ ସାନ୍ଦ୍ରତା ଜଳର ସାନ୍ଦ୍ରତାଠାରୁ କମ୍ । ତାହାର ନାମ କ'ଣ ?
(କ) ନେପ୍ଚୁନ୍ (ଖ) ୟୁରାନ୍ସ (ଗ) ଶନି (ଘ) ପ୍ଲୁଟୋ

110. ନିଜ ଅକ୍ଷ ଚାରିପଟେ ଥରେ ଘୂରିଆସିବାକୁ ସୂର୍ଯ୍ୟ କେତେ ସମୟ ନିଏ ?
(କ) 24 ଘଣ୍ଟା (ଖ) 11 ଘଣ୍ଟା (ଗ) 11 ଦିନ (ଘ) 24 ଦିନ

111. ସୌରବାୟୁ କେଉଁ ପ୍ରକାର ବସ୍ତୁକୁ ନେଇ ଗଠିତ ?
(କ) କଠିନ (ଖ) ତରଳ (ଗ) ଗ୍ୟାସ୍ (ଘ) ପ୍ଲାଜ୍ମା

112. ସମ୍ପୂର୍ଣ୍ଣ ସୂର୍ଯ୍ୟୋପରାଗ ସମୟରେ ସୂର୍ଯ୍ୟର କେଉଁ ଅଂଶ ଖାଲି ଆଖିକୁ ଲାଲ ଦେଖାଯାଏ ?
(କ) ଆଲୋକମଣ୍ଡଳ (ଖ) କୋରୋନାମଣ୍ଡଳ
(ଗ) ବର୍ଣ୍ଣମଣ୍ଡଳ (ଘ) କିଛି ନୁହେଁ

113. ପୂର୍ଣ୍ଣ ସୂର୍ଯ୍ୟୋପରାଗ ସମୟ ଏହି ସମୟଠାରୁ କେବେ ଅଧିକ ହୋଇ ପାରିବ ନାହିଁ, ତାହା କେତେ ?
(କ) 12 ମିନିଟ୍ 10 ସେକେଣ୍ଡ (ଖ) 7 ମିନିଟ୍ 40 ସେକେଣ୍ଡ
(ଗ) 2 ମିନିଟ୍ 45 ସେକେଣ୍ଡ (ଘ) 5 ମିନିଟ୍ 10 ସେକେଣ୍ଡ

114. ବେଇଲିଙ୍କ ମାଳି (Baily's beads) କେଉଁ ଘଟଣା ସହ ସଂପୃକ୍ତ ?
(କ) ସୌରଶିଖା (Solar flare) (ଖ) ସୂର୍ଯ୍ୟୋପରାଗ
(ଗ) ଚୁମ୍ବକୀୟ ଝଡ଼ (ଘ) ଚନ୍ଦ୍ରଗ୍ରହଣ

115. ପୃଥିବୀ ପୃଷ୍ଠରେ ଚନ୍ଦ୍ରର ଛାୟା କେଉଁ ବେଗରେ ଗତି କରିଥାଏ ?
(କ) ଘଣ୍ଟା ପ୍ରତି 3,000 କି.ମି.
(ଖ) ଘଣ୍ଟା ପ୍ରତି 3,000 ମିଟର
(ଗ) ସେକେଣ୍ଡ ପ୍ରତି 3,000 କି.ମି.
(ଘ) ସେକେଣ୍ଡ ପ୍ରତି 3,000 ମିଟର

116. କେଉଁ ଗ୍ରହକୁ 'କୁଆଁତାରା' କୁହାଯାଏ ?
(କ) ବୁଧ (ଖ) ମଙ୍ଗଳ (ଗ) ଶୁକ୍ର (ଘ) ବୃହସ୍ପତି

117. 'ପୃଥିବୀର ଯମଜ ଭ୍ରାତା' ଭାବେ କେଉଁ ଗ୍ରହକୁ କୁହାଯାଏ ?
(କ) ବୁଧ (ଖ) ଶୁକ୍ର (ଗ) ମଙ୍ଗଳ (ଘ) ଶନି

118. 'ଉଚ୍ଚତର ଗ୍ରହ' କାହାକୁ କୁହାଯାଏ ?
(କ) ଗ୍ୟାସୀୟ ଗ୍ରହ (ଖ) ପୃଥିବୀ କକ୍ଷ ବାହାରେ ଥିବା ଗ୍ରହ
(ଗ) ପୃଥିବୀଠାରୁ ବଡ଼ ଗ୍ରହ (ଘ) ନକ୍ଷତ୍ରଠାରୁ ଅଧିକ ଉଜ୍ଜ୍ୱଳ ଗ୍ରହ

119. କାହାର ପୃଷ୍ଠକ୍ଷେତ୍ରର ଅଧ୍ୟୟନକୁ ଏରୋଗ୍ରାଫି (Acrography) କୁହାଯାଏ ?
(କ) ଚନ୍ଦ୍ର (ଖ) ବୁଧ (ଗ) ଶନି (ଘ) ମଙ୍ଗଳ

120. ସେକ୍‌ସପିୟରଙ୍କ ନାଟକର ଏକ ଚରିତ୍ର ନାମରେ କେଉଁ ଗ୍ରହର ଉପଗ୍ରହର ନାମକରଣ କରାଯାଇଛି ?
(କ) ବୁଧ (ଖ) ୟୁରାନ୍‌ସ (ଗ) ବୃହସ୍ପତି (ଘ) ଶନି

121. ସୌରମଣ୍ଡଳ ଶେଷ ଭାଗରେ ଥିବା ଧୂମକେତୁ ବାଦଲର ନାମ କ'ଣ ?
(କ) ଉର୍ଟ ବାଦଲ (ଖ) କାସିନି ବାଦଲ
(ଗ) ହବଲ୍ ବାଦଲ (ଘ) ଏହିପରି କିଛି ବାଦଲ ନାହିଁ

122. ସୌରମଣ୍ଡଳର ଦ୍ୱିତୀୟ ବୃହତ୍ତମ ଉପଗ୍ରହର ନାମ କ'ଣ ?
(କ) ଆଇଓ (ଖ) ୟୁରୋପା (ଗ) ମିରାଣ୍ଡା (ଘ) ଟିଟାନ୍

123. ସୌରଜଗତରେ କେତୋଟି ବାମନ ଗ୍ରହକୁ ସ୍ୱୀକୃତି ଦିଆଯାଇଛି ?
(କ) 2 (ଖ) 3 (ଗ) 4 (ଘ) 5

124. ପ୍ଲୁଟୋ କକ୍ଷ ବାହାରେ ନିକଟରେ ଆବିଷ୍କୃତ ହୋଇଥିବା ଇରିସ୍ ନାମକ ପିଣ୍ଡଟି କେଉଁ ଶ୍ରେଣୀର ?
(କ) ବାମନ ଗ୍ରହ (ଖ) ଧୂମକେତୁ
(ଗ) ଗ୍ରହାଣୁ (ଘ) ଉପଗ୍ରହ

125. ରାତିର ଆକାଶରେ ଖାଲି ଆଖିକୁ କେତୋଟି ଗ୍ରହ ଦେଖାଯାଏ ?
(କ) 4 (ଖ) 5 (ଗ) 6 (ଘ) 8

126. କେଉଁ ଜ୍ୟୋତିର୍ବିଦୀୟ ପିଣ୍ଡର କକ୍ଷ ଓ ଅବସ୍ଥିତିକୁ ପ୍ରଥମେ ଗାଣିତିକ ଉପାୟରେ ନିର୍ଦ୍ଧାରଣ କରାଯିବା ପରେ ତାକୁ ଆବିଷ୍କାର କରାଯାଇଥିଲା ?
(କ) ୟୁରାନ୍‌ସ (ଖ) ନେପଚୁନ୍ (ଗ) ପ୍ଲୁଟୋ (ଘ) ସେରେସ୍

127. ୟୁରାନସ୍‌ର କେତୋଟି ବଳୟ (ring) ଅଛି ?
(କ) 8 (ଖ) 20 (ଗ) 11 (ଘ) 5

128. କାହାର ଆକାରର ପ୍ରାୟ ଅଧା ହେଉଛି ତାହାର ଗୋଟିଏ ଉପଗ୍ରହ ?
(କ) ବୃହସ୍ପତି (ଖ) ନେପଚୁନ୍ (ଗ) ପ୍ଲୁଟୋ (ଘ) ଶୁକ୍ର

129. ଗ୍ରହଣ (Eclipse) ପାଇଁ କ'ଣ ଦରକାର ?
(କ) ସୂର୍ଯ୍ୟ (ଖ) ଚନ୍ଦ୍ର ଓ ସୂର୍ଯ୍ୟ
(ଗ) ପୃଥିବୀ (ଘ) ଚନ୍ଦ୍ର, ସୂର୍ଯ୍ୟ ଓ ପୃଥିବୀ

## ଉତ୍ତର

| | | | | | |
|---|---|---|---|---|---|
| 1 - ଖ | 2 - କ | 3 - ଗ | 4 - ଗ | 5 - କ | 6 - ଘ |
| 7 - ଗ | 8 - ଘ | 9 - କ | 10 - ଖ | 11 - କ | 12 - ଖ |
| 13 - ଘ | 14 - ଗ | 15 - ଗ | 16 - ଖ | 17 - କ | 18 - ଘ |
| 19 - ଖ | 20 - କ | 21 - କ | 22 - ଗ | 23 - କ | 24 - ଗ |
| 25 - କ | 26 - ଖ | 27 - କ | 28 - ଖ | 29 - ଖ | 30 - ଗ |
| 31 - ଘ | 32 - ଗ | 33 - କ | 34 - ଗ | 35 - କ | 36 - ଖ |
| 37 - ଘ | 38 - ଘ | 39 - ଘ | 40 - ଖ | 41 - କ | 42 - ଗ |
| 43 - ଘ | 44 - କ | 45 - ଖ | 46 - ଗ | 47 - ଖ | 48 - ଗ |
| 49 - କ | 50 - ଖ | 51 - ଘ | 52 - କ | 53 - କ | 54 - ଖ |
| 55 - ଖ | 56 - କ | 57 - ଘ | 58 - ଗ | 59 - ଘ | 60 - କ |
| 61 - ଘ | 62 - ଖ | 63 - କ | 64 - ଖ | 65 - ଘ | 66 - ଘ |
| 67 - କ | 68 - ଖ | 69 - ଖ | 70 - କ | 71 - ଖ | 72 - କ |
| 73 - କ | 74 - ଖ | 75 - ଖ | 76 - ଖ | 77 - ଗ | 78 - ଖ |
| 79 - ଘ | 80 - କ | 81 - ଗ | 82 - ଖ | 83 - ଗ | 84 - ଖ |
| 85 - କ | 86 - କ | 87 - ଗ | 88 - କ | 89 - ଘ | 90 - ଗ |
| 91 - ଗ | 92 - ଗ | 93 - ଖ | 94 - ଘ | 95 - ଘ | 96 - ଗ |
| 97 - କ | 98 - କ | 99 - ଗ | 100 - ଗ | 101 - ଗ | 102 - ଖ |
| 103 - ଗ | 104 - ଘ | 105 - ଘ | 106 - କ | 107 - ଘ | 108 - କ |
| 109 - ଗ | 110 - ଘ | 111 - ଘ | 112 - ଗ | 113 - ଖ | 114 - ଖ |
| 115 - ଗ | 116 - ଗ | 117 - ଖ | 118 - ଖ | 119 - ଘ | 120 - ଖ |
| 121 - କ | 122 - ଘ | 123 - ଘ | 124 - କ | 125 - ଖ | 126 - ଖ |
| 127 - ଗ | 128 - ଗ | 129 - ଘ | | | |

—

# ୨ । ମହାକାଶ

1. ଆଲୋକର ବେଗ କେତେ ?
(କ) ସେକେଣ୍ଡ ପ୍ରତି 1,22,000 ମାଇଲ
(ଖ) ସେକେଣ୍ଡ ପ୍ରତି 87,000 ମାଇଲ
(ଗ) ସେକେଣ୍ଡ ପ୍ରତି 4,56,000 ମାଇଲ
(ଘ) ସେକେଣ୍ଡ ପ୍ରତି 1,86,000 ମାଇଲ
2. 'ପାରସେକ' ଏକକ କ'ଣ ମାପ କରେ ?
(କ) ସମୟ (ଖ) ଦୂରତା (ଗ) ତାପମାତ୍ରା (ଘ) ଚନ୍ଦ୍ରକଳା
3. ଏକ ପାରସେକ୍ କେତେ ଆଲୋକବର୍ଷ ସହ ସମାନ ?
(କ) 8.97 (ଖ) 1.27 (ଗ) 3.26 (ଘ) 6.25
4. ଆମର ଗାଲାକ୍ସିର ପରିଧି କେତେ ?
(କ) 1,00,000 ଆଲୋକବର୍ଷ (ଖ) 50,000 ଆଲୋକବର୍ଷ
(ଗ) 3,14,000 ଆଲୋକବର୍ଷ (ଗ) 6,28,000 ଆଲୋକବର୍ଷ
5. ଉଲକା କେଉଁଠାରୁ ଆସିଥାଏ ?
(କ) ଗ୍ରହାଣୁ ବଳୟ (ଖ) ଧୂମକେତୁ
(ଗ) ଉର୍ଟ ବାଦଲ (ଘ) କୁଇପର ବଳୟ
6. ବିଶ୍ୱ ସୃଷ୍ଟିର କେଉଁ ତତ୍ତ୍ୱ ବେଶି ଗ୍ରହଣୀୟ ?
(କ) ପ୍ରୋଟୋଷ୍ଟାର (ଖ) ବିଗ୍ ବ୍ୟାଙ୍ଗ୍
(ଗ) ହବଲ୍ ଧ୍ରୁବାଙ୍କ (ଘ) ସ୍ଥିତାବସ୍ଥା (Steady state)
7. କିଏ ଆପେକ୍ଷିକ ତତ୍ତ୍ୱ ଆବିଷ୍କାର କରିଥିଲେ ?
(କ) ନିଉଟନ୍ (ଖ) ମାକ୍ସ ପ୍ଲାଙ୍କ୍
(ଗ) ଆଲବର୍ଟ ଆଇନ୍‌ଷ୍ଟାଇନ୍ (ଘ) ପେର୍ସିଭାଲ୍ ଲୋୱେଲ୍
8. କେଉଁ ଦୁଇଟି ମହାଜାଗତିକ ପିଣ୍ଡ ମଧ୍ୟରେ ଥିବା ହାରାହାରି ଦୂରତାକୁ ଏକ ଜ୍ୟୋତିର୍ବିଦୀୟ ଏକକ (Astronomical Unit କୁହାଯାଏ ?
(କ) ପୃଥିବୀ ଓ ଚନ୍ଦ୍ର (ଖ) ପୃଥିବୀ ଓ ସୂର୍ଯ୍ୟ
(ଗ) ସୂର୍ଯ୍ୟ ଓ ପ୍ଲୁଟୋ (ଘ) ସୂର୍ଯ୍ୟ ଓ ଗାଲକ୍ସିର କେନ୍ଦ୍ର

9. ଗ୍ରହଗୁଡ଼ିକ ସୂର୍ଯ୍ୟ ଚାରିପଟେ ଇଲିପ୍‌ଟିକାଲ୍ କକ୍ଷରେ ଘୂରୁଛନ୍ତି ବୋଲି କେଉଁ ଜ୍ୟୋତିର୍ବିଦ୍ ପ୍ରଥମେ କହିଥିଲେ ?
(କ) କୋପରନିକ୍ସ (ଖ) ଗାଲିଲିଓ
(ଗ) ଜୋହନ୍‌ସ କେପଲର (ଘ) ଟାଇକୋ ବ୍ରାହେ

10. ବିଶ୍ୱର ପ୍ରସାରଣ ଘଟୁଛି, ପ୍ରଥମେ ଏହା କିଏ କହିଥିଲେ ?
(କ) ଆଇନଷ୍ଟାଇନ୍ (ଖ) ନିଉଟନ୍
(ଗ) ଏଡ଼ୱଇନ୍ ହବଲ୍ (ଘ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍

11. ଉପଗ୍ରହ 'କ' ଉପଗ୍ରହ 'ଖ' ଅପେକ୍ଷା ଗ୍ରହ ଚାରିପଟେ ଶୀଘ୍ର ଘୂରି ଆସୁଛି, ତାହାହେଲେ—
(କ) 'କ'ର ବସ୍ତୁତ୍ୱ 'ଖ' ଅପେକ୍ଷା କମ୍
(ଖ) 'କ'ର ବସ୍ତୁତ୍ୱ 'ଖ' ଅପେକ୍ଷା ଅଧିକ
(ଗ) 'ଖ' ଅପେକ୍ଷା 'କ' ଗ୍ରହର ଅଧିକ ନିକଟତର
(ଘ) 'ଖ' ଅପେକ୍ଷା 'କ' ଗ୍ରହଠାରୁ ଦୂରରେ ଅଛି

12. ଅଧିକାଂଶ ଉପଗ୍ରହର କକ୍ଷପଥ କାହାର ଆକାର ସହିତ ସମାନ ?
(କ) ବୃତ୍ତ (ଖ) ଇଲିପ୍‌ସ (ଗ) ହାଇପରବୋଲା (ଘ) କେଉଁଟି ନୁହେଁ

13. ନକ୍ଷତ୍ର ପ୍ରସଙ୍ଗରେ ଲାଲ ବିସ୍ଥାପନ କ'ଣ ବୁଝାଏ ?
(କ) ନକ୍ଷତ୍ରଟି ହେଉଛି ଗୋଟିଏ ଲାଲ ଦାନବ ଶ୍ରେଣୀର
(ଖ) ନକ୍ଷତ୍ରଟି ପୃଥିବୀ ଆଡ଼କୁ ଗତି କରୁଛି
(ଗ) ନକ୍ଷତ୍ରଟି ପୃଥିବୀଠାରୁ ଦୂରକୁ ଚାଲିଯାଉଛି
(ଘ) ନକ୍ଷତ୍ରଟି ହେଉଛି ଗୋଟିଏ କୃଷ୍ଣ ଗର୍ତ୍ତ

14. ଆଲୋକବର୍ଷ କହିଲେ କ'ଣ ବୁଝାଯାଏ ?
(କ) ଆଲୋକର ବେଗ
(ଖ) ଗୋଟିଏ ବର୍ଷରେ ଗୋଟିଏ ନକ୍ଷତ୍ରରୁ ନିର୍ଗତ ଶକ୍ତି
(ଗ) ଗୋଟିଏ ବର୍ଷରେ ଆଲୋକ ଗତି କରୁଥିବା ଦୂରତା
(ଘ) କେଉଁଟି ନୁହେଁ

15. ଆରେସିବୋ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର କେଉଁଠାରେ ଅଛି ?
(କ) ଆରିଜୋନା, (ଯୁକ୍ତରାଷ୍ଟ୍ର ଆମେରିକା) (ଖ) ପୁଏର୍ଟୋ ରିକୋ
(ଗ) ଚିଲି (ଘ) କାନାରି ଦୀପପୁଞ୍ଜ

16. ଗ୍ରହ ପର୍ଯ୍ୟବେକ୍ଷଣ ପାଇଁ କିଏ ପ୍ରଥମେ ଦୂରବୀକ୍ଷଣ ଯନ୍ତ୍ର ବ୍ୟବହାର କରିଥିଲେ ?
(କ) ନିଉଟନ୍ (ଖ) କେପଲର (ଗ) ଗାଲିଲିଓ (ଘ) ଟାଇକୋ ବ୍ରାହେ
17. ଦୂରବୀକ୍ଷଣ ଯନ୍ତ୍ରର ଉଦ୍ଭାବକ କିଏ ?
(କ) ଗାଲିଲିଓ (ଖ) ହାନ୍ସ ଲିପରସେ
(ଗ) ନିଉଟନ (ଘ) ଥୋମାସ୍ ଆଲଭା ଏଡ଼ିସନ୍
18. ମହାକାଶରେ ଅବସ୍ଥାପିତ ପ୍ରଥମ ଘୂର୍ଣ୍ଣାୟମାନ ଦୂରବୀକ୍ଷଣ ଯନ୍ତ୍ରର ନାମ କ'ଣ ?
(କ) ହବଲ୍ (ଖ) ଚନ୍ଦ୍ରା (ଗ) ଗାଲିଲିଓ (ଘ) ମିର୍
19. ଭାରତରେ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର କେଉଁଠାରେ ସ୍ଥାପିତ ହୋଇଛି ?
(କ) ବାଙ୍ଗାଲୋର (ଖ) ପୁନେ (ଗ) ଜୟପୁର (ଘ) ମୁମ୍ବାଇ
20. ମହାକର୍ଷଣ ବଳର ସୂତ୍ର କିଏ ଆବିଷ୍କାର କରିଥିଲେ ?
(କ) ଗାଲିଲିଓ (ଖ) ନିଉଟନ୍ (ଗ) ଆଇନ୍‌ଷ୍ଟାଇନ୍ (ଘ) କେପ୍‌ଲର
21. ଆଲୋକର ସାତରଙ୍ଗ ବିଶିଷ୍ଟ ବର୍ଣ୍ଣାଳିକୁ କିଏ ଆବିଷ୍କାର କରିଥିଲେ ?
(କ) ଗାଲିଲିଓ (ଖ) ଟାଇକୋ ବ୍ରାହେ (ଗ) ନିଉଟନ୍ (ଘ) କେପଲର
22. କେଉଁ ଜ୍ୟୋତିର୍ବିତ୍ ଧୂମକେତୁର କକ୍ଷ ତତ୍ତ୍ୱ ବାହାର କରିଥିଲେ ?
(କ) ଏଡମଣ୍ଡ୍ ହ୍ୟାଲେ (ଖ) ଉଇଲିୟମ୍ ହରଶେଲ
(ଗ) ଗାଲିଲିଓ ଗାଲିଲି (ଘ) କୋପରନିକ୍ସ
23. ମହାଜାଗତିକ କିମ୍ବା ଗାଲାକ୍ଟିକ୍ ବର୍ଷ କାହାକୁ କୁହାଯାଏ ?
(କ) ଯେଉଁ ବର୍ଷ ପୃଥିବୀକୁ ଧୂମକେତୁ ଦେଖାଯାଏ
(ଖ) ସୂର୍ଯ୍ୟ ଚାରିପଟେ ପୃଥିବୀର ପରିକ୍ରମଣ ସମୟ
(ଗ) ଯେଉଁ ବର୍ଷ ସମ୍ପୂର୍ଣ୍ଣ ସୂର୍ଯ୍ୟୋପରାଗ ଘଟିଥାଏ
(ଘ) ଆକାଶ ଗଙ୍ଗା ଗାଲାକ୍ସି କେନ୍ଦ୍ର ଚାରିପଟେ ସୂର୍ଯ୍ୟର ପରିକ୍ରମଣ ସମୟ
24. କାହାର ଅଧ୍ୟୟନକୁ ସେଲେନୋଗ୍ରାଫି କୁହାଯାଏ ?
(କ) ଚନ୍ଦ୍ରପୃଷ୍ଠ (ଖ) ଗାଲାକ୍ସି (ଗ) ସୂର୍ଯ୍ୟପୃଷ୍ଠ (ଘ) ଗ୍ରହାଣୁପୁଞ୍ଜ
25. ଏକ ଆଲୋକବର୍ଷର ମୂଲ୍ୟ କେତେ ?
(କ) $9.46 \times 10^{12}$ କି.ମି. (ଖ) $9.46 \times 10^{15}$ କି.ମି.
(ଗ) $10^{30}$ କି.ମି (ଘ) $10^{20}$ କି.ମି.
26. କ୍ୱାଣ୍ଟମ୍ ତତ୍ତ୍ୱ କିଏ ଆବିଷ୍କାର କରିଥିଲେ ?
(କ) ନିଉଟନ୍ (ଖ) ଆଇନ୍‌ଷ୍ଟାଇନ୍
(ଗ) ସୁବ୍ରମନ୍ୟମ୍ ଚନ୍ଦ୍ରଶେଖର (ଘ) ମାକ୍ସ ପ୍ଲାଙ୍କ୍

27. କେଉଁ ଜ୍ୟୋତିର୍ବିତ୍ ଅବଲୋହିତ ବିକିରଣକୁ ଆବିଷ୍କାର କରିଛନ୍ତି ?
(କ) ଏଡ଼ମଣ୍ଡ ହ୍ୟାଲେ (ଖ) ନିଉଟନ
(ଗ) ଉଇଲିୟମ୍ ହରଶେଲ୍ (ଘ) ଗାଲିଲିଓ

28. ବିଶ୍ୱ ସୃଷ୍ଟି ସମ୍ବନ୍ଧୀୟ 'ସ୍ଥିତାବସ୍ଥା ତତ୍ତ୍ୱ'ର ପ୍ରଧାନ ପ୍ରବକ୍ତା କିଏ ?
(କ) ଫ୍ରେଡ୍ ହୋଏଲ୍ (ଖ) ଉଇଲିୟମ୍ ହକିଙ୍ଗ୍
(ଗ) କାର୍ଲ ସାଗନ୍ (ଘ) ଏଡ଼ଉଇନ୍ ହବଲ୍

29. ମହାକାଶରେ ବେତାର ତରଙ୍ଗକୁ କିଏ ଆବିଷ୍କାର କରିଥିଲେ ?
(କ) ଉଇଲିୟମ୍ ହରଶେଲ୍ (ଖ) ଜନ୍ ହରଶେଲ୍
(ଗ) କାର୍ଲ ଜାନ୍‌ସ୍କି (ଘ) ଆଣ୍ଟୋନି ହେଓ୍ୱିସ୍

30. ଆକ୍ଟିନୋମିଟର ଯନ୍ତ୍ର ସାହାଯ୍ୟରେ କ'ଣ ମପାଯାଏ ?
(କ) ତାପ ବିକିରଣ (ଖ) ଗ୍ରହର ବେଗ
(ଗ) ସୌର ବିକିରଣ (ଘ) ସୂର୍ଯ୍ୟଠାରୁ ଦୂରତା

31. ସୂର୍ଯ୍ୟଠାରୁ ଗ୍ରହଗୁଡ଼ିକର ହାରାହାରି ଦୂରତା ଜାଣିବା ପାଇଁ କିଏ ଏକ ସୂତ୍ର ବାହାର କରିଥିଲେ ?
(ଖ) ଜେ.ଇ. ବୋଡ଼େ (ଖ) ଜୋହାନ୍ କେପଲର
(ଗ) କ୍ରିଷ୍ଟିୟାନ୍ ହିଉଜେନ୍‌ସ (ଘ) ଟାଇକୋ ବ୍ରାହେ

32. ଧୂମକେତୁଗୁଡ଼ିକ 'ଅପରିଷ୍କାର ବରଫପେଣ୍ଡୁ'ରୁ ଗଠିତ, ଏହି ତତ୍ତ୍ୱ କିଏ ପ୍ରଥମେ ପ୍ରକାଶ କରିଥିଲେ ?
(କ) ଏଡ଼ମଣ୍ଡ ହ୍ୟାଲେ (ଖ) ଉଇଲେହାମ୍ ଭନ୍ ବେଲା
(ଗ) ଫ୍ରେଡ୍ ହୋଏଲ୍ (ଘ) ଫ୍ରାଙ୍କ୍ ଏଲ୍. ହୁଇପଲ୍

33. ପୃଥିବୀରେ ହିଲିୟମ୍ ଆବିଷ୍କୃତ ହେବା ପୂର୍ବରୁ କିଏ ସୂର୍ଯ୍ୟରେ ହିଲିୟମ୍ ଆବିଷ୍କାର କରିଥିଲେ ?
(କ) ଉଇଲିୟମ୍ ରାମସେ (ଖ) ନରମାନ୍ ଲକିୟର
(ଗ) ଗୁଷ୍ଟାଭ୍ କିରଚଫ୍ (ଘ) ବୁନ୍‌ସେନ୍ ବର୍ନର୍

34. ପ୍ରତିଫଳନ ଦୂରବୀକ୍ଷଣ ଯନ୍ତ୍ର କିଏ ଉଦ୍ଭାବନ କରିଥିଲେ ?
(କ) ଉଇଲିୟମ୍ ହରଶେଲ (ଖ) ଗାଲିଲିଓ
(ଗ) ଆଇଜାକ୍ ନିଉଟନ୍ (ଘ) ଜୋହାନ୍‌ସ କେପଲର

35. କିଏ ଗ୍ରେଗୋରୀୟ ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ କରିଥିଲେ ?
(କ) ଡେଭିଡ୍ ଗ୍ରେଗୋରି (ଖ) ଜେମ୍‌ସ ଗ୍ରେଗୋରି
(ଗ) ତ୍ରୟୋଦଶ ପୋପ୍ ଗ୍ରେଗୋରି (ଘ) ଏମାନଙ୍କ ମଧ୍ୟରୁ କେହି ନୁହଁନ୍ତି

36. ଅବଲୋହିତ ଦୂରବୀକ୍ଷଣ ଯନ୍ତ୍ର କିଏ ଉଦ୍ଭାବନ କରିଥିଲେ ?
(କ) ଡେଭିଡ୍ ଆଲେନ୍ (ଖ) ଜେମ୍ସ ଦେୱାର
(ଗ) ଫ୍ରାଙ୍କ୍ ଲୋ (ଘ) ଉଇଲିୟମ୍ ଥମସନ୍
37. ମହାକାଶ ପିଣ୍ଡଗୁଡ଼ିକରେ ମୌଳିକ ପଦାର୍ଥର ସନ୍ଧାନ ପାଇଁ କେଉଁ ଯନ୍ତ୍ର ବ୍ୟବହୃତ ହୁଏ ?
(କ) ସ୍ପେକ୍ଟ୍ରୋମିଟର (ଖ) ସ୍ପେକ୍ଟ୍ରୋଗ୍ରାଫ୍
(ଗ) ସ୍ପେକ୍ଟ୍ରୋସ୍କୋପ୍ (ଘ) ରେଡ଼ିଓମିଟର
38. ନକ୍ଷତ୍ର ଓ ଗାଲାକ୍ସିର ବ୍ୟାସ ନିରୂପଣପାଇଁ କେଉଁ ଯନ୍ତ୍ର ବ୍ୟବହୃତ ହୁଏ ?
(କ) ଇଣ୍ଟରଫେରୋମିଟର (ଖ) ଫଟୋମିଟର
(ଗ) ରେଡ଼ିଓମିଟର (ଘ) ସ୍ପେକ୍ଟ୍ରୋମିଟର
39. ମହାକାଶ ବସ୍ତୁଗୁଡ଼ିକର ବେଗ ଜାଣିବାପାଇଁ କେଉଁ ସିଦ୍ଧାନ୍ତ ପ୍ରୟୋଗ କରାଯାଏ ?
(କ) ରମଣ ସିଦ୍ଧାନ୍ତ (ଖ) ଡପଲର ସିଦ୍ଧାନ୍ତ
(ଗ) ଉଇଲସନ୍-ବାପୁ ସିଦ୍ଧାନ୍ତ (ଘ) ଉଇଲସନ୍ ସିଦ୍ଧାନ୍ତ
40. ଜ୍ୟୋତିର୍ବିଜ୍ଞାନର କେଉଁ ନିୟମଟିର କୌଣସି ବୈଜ୍ଞାନିକ ଭିତ୍ତିଭୂମି ନାହିଁ ?
(କ) କେପଲରଙ୍କ ନିୟମ (ଖ) ହବଲଙ୍କ ନିୟମ
(ଗ) ନିଉଟନଙ୍କ ମାଧ୍ୟାକର୍ଷଣ ନିୟମ (ଘ) ବୋଡ଼େଙ୍କ ନିୟମ
41. କୌଣସି ଗାଲାକ୍ସିର ପଳାୟନ ବେଗ ତାହାର ଦୂରତା ସହ ସମାନୁପାତୀ, ଜ୍ୟୋତିର୍ବିଜ୍ଞାନର କେଉଁ ନିୟମ ଏହା ଦର୍ଶାଏ ?
(କ) ଷ୍ଟେଫାନ୍‌ଙ୍କ ନିୟମ (ଖ) କେପଲରଙ୍କ ନିୟମ
(ଗ) ହବଲରଙ୍କ ନିୟମ (ଘ) ଆଇନ୍‌ଷ୍ଟାଇନ୍‌ଙ୍କ ବିଶେଷ ଆପେକ୍ଷିକ ତତ୍ତ୍ୱ
42. କୌଣସି ନକ୍ଷତ୍ରର ଚୁମ୍ବକୀୟ କ୍ଷେତ୍ରର ତୀବ୍ରତା ମାପିବା ପାଇଁ କେଉଁ ସିଦ୍ଧାନ୍ତକୁ ପ୍ରୟେଗ କରାଯାଏ ?
(କ) କମ୍ପଟନ୍ ସିଦ୍ଧାନ୍ତ (ଖ) ଜୀମାନ୍ ସିଦ୍ଧାନ୍ତ
(ଗ) ବାପୁ-ଉଇଲସନ୍ ସିଦ୍ଧାନ୍ତ (ଘ) ରମଣ ସିଦ୍ଧାନ୍ତ
43. ବିଶ୍ୱର ବୟସ କେତେ ଅନୁମାନ କରାଯାଉଛି ?
(କ) 5-10 ବିଲିୟନ୍ ବର୍ଷ (ଖ) 10-20 ବିଲୟିନ୍ ବର୍ଷ
(ଗ) 20-30 ବିଲିୟନ୍ ବର୍ଷ (ଘ) 30-40 ବିଲୟିନ୍ ବର୍ଷ
44. ବିଶ୍ୱର ସବୁଠାରୁ ବେଶି କେଉଁ ମୌଳିକ ପଦାର୍ଥ ଅଛି ?
(କ) ହିଲିୟମ୍ (ଖ) ଅଙ୍ଗାରକ (କାର୍ବନ୍) (ଗ) ସୀସା (ଘ) ଉଦ୍‌ଜାନ

45. ବିଶ୍ୱର ସୃଷ୍ଟି 'ବିଗ୍ ବ୍ୟାଙ୍ଗ୍' ଯୋଗୁଁ ହୋଇଛି. ଏହି ତତ୍ତ୍ୱର ଏକ ମୁଖ୍ୟ ପ୍ରମାଣ ହେଉଛି ସୂକ୍ଷ୍ମତରଙ୍ଗ ପଶ୍ଚାତ୍‌ପଟ ବିକିରଣ (Microwave background radiation)– ଏହାକୁ କିଏ ଆବିଷ୍କାର କରିଥିଲେ ?

(କ) ରବର୍ଟ ଉଇଲସନ୍ (ଖ) ଆର୍ନୋ ପେନ୍‌ଜିଆ

(ଗ) ଥୋମାସ୍ ଗୋଲ୍ଡ଼ (ଘ) ଷ୍ଟିଫେନ୍ ଉଇଲିୟମ୍ ହକିଙ୍ଗ୍

46. 'ବିଗ୍ ବ୍ୟାଙ୍ଗ' ତତ୍ତ୍ୱର ପ୍ରଥମ ପ୍ରମାଣ କିଏ ଦେଇଥିଲେ ?

(କ) ଏଡ୍‌ଉଇନ୍ ହବଲ୍ (ଖ) ଆଲବର୍ଟ ଆଇନଷ୍ଟାଇନ୍

(ଗ) ଷ୍ଟିଫେନ୍ ହକିଙ୍ଗ୍ (ଘ) ଉଇଲିୟମ୍ ହରଶ୍ଚେଲ୍

47. ଜଣେ ବ୍ୟକ୍ତିର ଓଜନ ପୃଥିବୀରେ 60 କି.ଗ୍ରା ହେଲେ, ଚନ୍ଦ୍ରପୃଷ୍ଠରେ ତାହାର ଓଜନ କେତେ ହେବ ?

(କ) 60 କି.ଗ୍ରା. (ଖ) 120 କି.ଗ୍ରା (ଗ) 30 କି.ଗ୍ରା. (ଘ) 10 କି.ଗ୍ରା

48. 1796 ମସିହାରେ ପ୍ରସିଦ୍ଧ ଫରାସୀ ବୈଜ୍ଞାନିକ ନୀହାରିକାବାଦ ପ୍ରକାଶ କଲେ, ଏଥିରୁ ସୌରଜଗତର ଉତ୍ପତ୍ତି ସମ୍ବନ୍ଧରେ ଧାରଣା ମିଳିଲା, ବୈଜ୍ଞାନିକଙ୍କ ନାମ କ'ଣ ?

(କ) ଲାପ୍ଲାସ୍ (ଖ) ଲାଗ୍ରାଞ୍ଜେ

(ଗ) ଆନ୍ଦ୍ରେ ଏମ୍ପିୟର୍ (ଘ) ସିମନ୍ ଡେନିସ୍ ପୟସନ୍

49. ଗୋଟିଏ ଧୂମକେତୁ ସୂର୍ଯ୍ୟଆଡ଼କୁ ଆସିଲେ କ'ଣ ହୁଏ ?

(କ) ଏହାର ଲାଞ୍ଜ ସୃଷ୍ଟି ହୁଏ (ଖ) ଏହାର ଉଜ୍ଜ୍ୱଳତା ବୃଦ୍ଧି ପାଏ

(ଗ) ଏହା ତରଳିଯାଏ (ଘ) ଏଥିମଧ୍ୟରୁ କୌଣସିଟି ନୁହେଁ

50. ଗାଲିଲିଓ କେଉଁ ଦେଶର ?

(କ) ଜର୍ମାନୀ (ଖ) ଇଟାଲି (ଗ) ହଲାଣ୍ଡ (ଘ) ଇଂଲଣ୍ଡ

51. ଆଇନଷ୍ଟାଇନ୍ କେଉଁ ବର୍ଷ ମୃତ୍ୟୁବରଣ କଲେ ?

(କ) 1950 (ଖ) 1955 (ଗ) 1965 (ଘ) 1970

52. ଟାଇକୋ ବ୍ରାହେ ଦୂରବୀକ୍ଷଣ ଯନ୍ତ୍ରର ଉଦ୍ଭାବନ ପୂର୍ବରୁ ପର୍ଯ୍ୟବେକ୍ଷଣ ଦ୍ୱାରା ଗ୍ରହଗୁଡ଼ିକର ଗତିର ସଠିକ ବିବ ଣୀ ଲିପିବଦ୍ଧ କରିଯାଇଛନ୍ତି, ସେ କେଉଁ ଦେଶରେ ଜନ୍ମଗ୍ରହଣ କରିଥିଲେ ?

(କ) ଡେନମାର୍କ (ଖ) ଇଂଲଣ୍ଡ (ଗ) ଫ୍ରାନ୍ସ (ଘ) ଚୀନ୍

53. ଗାଲିଲିଓ କେଉଁ ଯନ୍ତ୍ରର ବିକାଶ କରିଥିଲେ ?
(କ) ଦୂରବୀକ୍ଷଣ ଯନ୍ତ୍ର (ଖ) ଅଣୁବୀକ୍ଷଣ ଯନ୍ତ୍ର
(ଗ) ପରିବର୍ଦ୍ଧକ କାଚ (ଘ) ତାପମାନ ଯନ୍ତ୍ର

## ଉତ୍ତର

| | | | | | |
|---|---|---|---|---|---|
| 1 - ଘ | 2 - ଖ | 3 - ଗ | 4 - ଗ | 5 - କ | 6 - ଖ |
| 7 - ଗ | 8 - ଖ | 9 - ଗ | 10 - ଗ | 11 - ଗ | 12 - ଖ |
| 13 - ଗ | 14 - ଗ | 15 - ଖ | 16 - ଗ | 17 - ଖ | 18 - କ |
| 19 - ଖ | 20 - ଖ | 21 - ଗ | 22 - କ | 23 - ଘ | 24 - କ |
| 25 - କ | 26 - ଖ | 27 - ଗ | 28 - କ | 29 - ଗ | 30 - ଗ |
| 31 - କ | 32 - ଘ | 33 - ଖ | 34 - ଗ | 35 - ଖ | 36 - ଗ |
| 37 - କ | 38 - କ | 39 - ଖ | 40 - ଘ | 41 - ଗ | 42 - ଖ |
| 43 - ଖ | 44 - ଘ | 45 - କ ଓ ଖ | 46 - କ | 47 - ଘ | 48 - କ |
| 49 - କ | 50 - ଖ | 51 - ଖ | 52 - କ | 53 - କ | |

# ୩ । ନକ୍ଷତ୍ର

1. ଧ୍ରୁବତାରା କେଉଁ ନକ୍ଷତ୍ରମଣ୍ଡଳରେ ଅଛି ?
(କ) ଉର୍ସା ମେଜର (ଖ) ଉର୍ସା ମାଇନର (ଗ) କର୍କଟ (ଘ) କାଳପୁରୁଷ
2. ସୂର୍ଯ୍ୟକୁ ଛାଡ଼ିଦେଲେ ପୃଥିବୀର ନିକଟତମ ନକ୍ଷତ୍ର କିଏ ?
(କ) ପ୍ରକ୍ସିମା ସେଣ୍ଟାଉରି (ଖ) ଲୁବ୍ଧକ
(ଗ) ଧ୍ରୁବତାରା (ଘ) କାପେଲା
3. 'କୃଷ୍ଣ ଗର୍ତ୍ତ'ର ଏପରି ନାମକରଣର କାରଣ ହେଉଛି—
(କ) ଏହା କୃଷ୍ଣବର୍ଣ୍ଣର ପଦାର୍ଥକୁ ନେଇ ଗଠିତ
(ଖ) ଦୂରରୁ ଦେଖିଲେ ଏହା କଳା ଦେଖାଯାଏ
(ଗ) ଦୃଶ୍ୟମାନ ଆଲୋକର ଅଧିକାଂଶ ଭାଗକୁ ଏହା ବିକର୍ଷଣ କରେ
(ଘ) ଏହାର ପଳାତକ ବେଗ ଆଲୋକର ବେଗଠାରୁ ଅଧିକ
4. ନକ୍ଷତ୍ରମଣ୍ଡଳଗୁଡ଼ିକର ଉଦ୍ଭାବନ ଓ ନାମକରଣ ପ୍ରଥମେ କିଏ କରିଥିଲେ ?
(କ) ଜ୍ୟୋତିର୍ବିତ୍ (ଖ) ଭାଷାବିଜ୍ଞାନୀ (ଗ) କୃଷକ (ଘ) ମହାକାଶଚାରୀ ।
5. 1929 ମସିହାରେ ଆନ୍ତର୍ଜାତୀୟ ଜ୍ୟୋତିର୍ବିତ୍ ସଂଘ ଆକାଶରେ ନକ୍ଷତ୍ରମଣ୍ଡଳ-ଗୁଡ଼ିକର ଗୋଟିଏ ସେଟ୍ ପ୍ରସ୍ତୁତ କଲେ, ଏହି ସେଟ୍‌ରେ କେତୋଟି ନକ୍ଷତ୍ରମଣ୍ଡଳ ଥିଲା ?
(କ) 12 (ଖ) 44 (ଗ) 88 (ଘ) 176
6. କ୍ରାବ୍ ନେବୁଲା କେଉଁ ନକ୍ଷତ୍ରମଣ୍ଡଳରେ ଅଛି ?
(କ) ବୃଷ (ଖ) କର୍କଟ (ଗ) ବିଛା (ଘ) ଓରିଅନ୍
7. ରାତିର ଆକାଶରେ ଦେଖାଯାଉଥିବା ନକ୍ଷତ୍ରମଣ୍ଡଳ ମାସକୁ ମାସ ନିଜର ସ୍ଥାନ ବଦଳିବାର ଦେଖାଯାଏ । କାରଣ ହେଉଛି – ଏହାର
(କ) ସୂର୍ଯ୍ୟ ଓ ନକ୍ଷତ୍ରଗୁଡ଼ିକର ଆପେକ୍ଷିକ ଗତି
(ଖ) ପୃଥିବୀର ନିଜ ଅକ୍ଷରେ ଘୂର୍ଣ୍ଣନ
(ଗ) ପୃଥିବୀ ଚାରିପଟେ ଚନ୍ଦ୍ରର ଘୂର୍ଣ୍ଣନ
(ଘ) ସୂର୍ଯ୍ୟ ଚାରିପଟେ ପୃଥିବୀର ପରିକ୍ରମଣ

8. ଆନ୍ତର୍ନାକ୍ଷତ୍ରିକ ଗ୍ୟାସ୍ ଓ ଧୂଳିର ବାଦଲକୁ କ'ଣ କୁହାଯାଏ ?
(କ) ପଲ୍‌ସାର (ଖ) ନେବୁଲା (ଗ) କୃଷ୍ଣଗର୍ତ୍ତ (ଘ) କ୍ୱାସାର
9. ନକ୍ଷତ୍ରରେ କେଉଁ ମୌଳିକ ପଦାର୍ଥ ସର୍ବାଧିକ ପରିମାଣରେ ଥାଏ ?
(କ) ଅମ୍ଳଜାନ (ଖ) ଅଙ୍ଗାର (ଗ) ଉଦ୍‌ଜାନ (ଘ) ହିଲିଅମ୍
10. ଆକାଶର ଉଜ୍ଜ୍ୱଳତମ ତାରାର ନାମ କ'ଣ ?
(କ) ଲୁବ୍‌ଧକ (ଖ) ଧ୍ରୁବତାରା (ଗ) ପ୍ରକ୍‌ସିମା ସେଣ୍ଟାଉରି (ଘ) ବାଣରାଜା
11. ଏଥିମଧ୍ୟରୁ କାହା ସହିତ 'ସୁପରନୋଭା' ଶବ୍ଦ ଜଡ଼ିତ ?
(କ) ନୂତନ ଗାଲାକ୍‌ସିର ଜନ୍ମ (ଖ) ନକ୍ଷତ୍ରର କୃଷ୍ଣ ବାମନରେ ପରିଣତ
(ଗ) ବିସ୍ଫୋରଣ ହୋଇ ନକ୍ଷତ୍ରର ମୃତ୍ୟୁ (ଘ) କେଉଁଟି ନୁହେଁ
12. ଆମ ଗାଲାକ୍‌ସିର ନାମ କ'ଣ ?
(କ) ଆଣ୍ଡ୍ରାମେଡ଼ା (ଖ) ଆକାଶଗଙ୍ଗା
(ଗ) ଆଲମଣ୍ଡ ଜଏ (ଘ) ମାଗେଲାନିକ୍ ବାଦଲ
13. ପ୍ରସିଦ୍ଧ ହର୍ଜସ୍ପ୍ରିଙ୍ଗ୍-ରସେଲ୍ (H-R) ଚିତ୍ର କାହାକୁ ବିଭକ୍ତିକରଣ କରିଥାଏ ?
(କ) ଗାଲାକ୍‌ସି (ଖ) ଧୂମକେତୁ (ଗ) ନକ୍ଷତ୍ର (ଘ) ଗ୍ରହାଣୁ
14. ପ୍ରାଚୀନ କାଳରେ ନାବିକମାନେ ଜଳଯାତ୍ରା ସମୟରେ କାହାକୁ ଦେଖି ଦିଗ ଜାଣିପାରୁଥିଲେ ?
(କ) ଲୁବ୍‌ଧକ (ଖ) ଶୁକ୍ର (ଗ) ଚନ୍ଦ୍ର (ଘ) ଧ୍ରୁବତାରା
15. ରେଡ଼ିଓ ଆବୃତ୍ତିରେ ବିକିରଣ ନିର୍ଗତ କରୁଥିବା ନକ୍ଷତ୍ରକୁ କ'ଣ କୁହାଯାଏ ?
(କ) ସୁପରନୋଭା (ଖ) ନିଉଟ୍ରନ୍ ତାରକା
(ଗ) ଶ୍ୱେତ ବାମନ (ଘ) କ୍ୱାସାରସ୍
16. ନିମ୍ନଲିଖିତ ମଧ୍ୟରୁ କେଉଁ ବିଶିଷ୍ଟ ନକ୍ଷତ୍ରଟି ବିଛା ନକ୍ଷତ୍ରମଣ୍ଡଳରେ ଅଛି ?
(କ) ଜ୍ୟେଷ୍ଠା (ଖ) ଆର୍ଦ୍ରା (ଗ) ଧ୍ରୁବତାରା (ଘ) ସୂର୍ଯ୍ୟ
17. ସପ୍ତର୍ଷିମଣ୍ଡଳର ସବୁଠାରୁ ଉଜ୍ଜ୍ୱଳ ତାରାର ନାମ କ'ଣ ?
(କ) କ୍ରତୁ (ଖ) ଅଙ୍ଗିରା (ଗ) ବଶିଷ୍ଠ (ଘ) ମରୀଚି
18. ନକ୍ଷତ୍ରର ଉଜ୍ଜ୍ୱଳତାକୁ ମାଗ୍ନିଚ୍ୟୁଡ୍ ଆକାରରେ ପ୍ରକାଶ କରାଯାଏ, କେଉଁ ମାଗ୍ନିଚ୍ୟୁଡ୍ ପର୍ଯ୍ୟନ୍ତ ନକ୍ଷତ୍ରକୁ ଖାଲି ଆଖିରେ ଦେଖିହୁଏ ?
(କ) 4 (ଖ) 5 (ଗ) 6 (ଘ) 7
19. ଉଜ୍ଜ୍ୱଳତମ ତାରା ଲୁବ୍‌ଧକ କେଉଁ ଅନ୍ୟ ନାମରେ ଜଣା ?

(କ) ଡଗ୍ ଷ୍ଟାର (ଖ) ପ୍ରକ୍ସିମା ସେଣ୍ଟାଉରି
(ଗ) ଉତ୍ତର ନକ୍ଷତ୍ର (ଘ) ବର୍ଣ୍ଣାଡ୍‌ଙ୍କ ନକ୍ଷତ୍ର

20. କେଉଁଥିରୁ ନକ୍ଷତ୍ରରେ ପ୍ରଚୁର ପରିମାଣର ଶକ୍ତି ଉତ୍ପନ୍ନ ହେଉଛି ?
(କ) ପରମାଣୁ ସଂଯୋଜନ (ଖ) ପରମାଣୁ ବିଭାଜନ
(ଗ) ହିଲିୟମ୍ (ଘ) ଉଦ୍‌ଜାନ

21. ସୁବ୍ରମନ୍ୟମ୍ ଚନ୍ଦ୍ରଶେଖର 1983 ମସିହାରେ କେଉଁଥିପାଇଁ ପଦାର୍ଥ ବିଜ୍ଞାନରେ ନୋବେଲ ପୁରସ୍କାର ପାଇଥିଲେ ?
(କ) ଗୋଟିଏ ନୂତନ ଗାଲାକ୍ସି ଆବିଷ୍କାର
(ଖ) ସୂର୍ଯ୍ୟର ତାପମାନ ନିର୍ଦ୍ଧାରଣ
(ଗ) ନକ୍ଷତ୍ରର ଗଠନ ଓ ବିବର୍ତ୍ତନର ତାତ୍ତ୍ୱିକ ଅଧ୍ୟୟନ
(ଘ) ଉପରଲିଖିତ କୌଣସିଟି ନୁହେଁ

22. ଆକାଶଗଙ୍ଗା କେଉଁ ପ୍ରକାର ଛାପାପଥ ?
(କ) ଅସମାନତା ଛାୟାପଥ (ଖ) କୁଣ୍ଡଳାକୃତି ଛାୟାପଥ
(ଗ) ଇଲିପ୍‌ଟିକାଲ୍ ଛାୟାପଥ (ଘ) ମୁଦ୍ରିକାକୃତି ଛାୟାପଥ

23. ପ୍ରଥମ ସୁପରନୋଭାକୁ କେବେ ଲିପିବଦ୍ଧ କରାଯାଇଛି ?
(କ) 1286 ମସିହା (ଖ) 1054 ମସିହା
(ଗ) 1572 ମସିହା (ଘ) 1761 ମସିହା

24. ବିଶ୍ୱର ଉଜ୍ଜ୍ୱଳତମ ବସ୍ତୁ କିଏ ?
(କ) ପଲ୍‌ସାର (ଖ) ନେବୁଲା (ଗ) କ୍ୱାସାରସ୍ (ଘ) ନିଉଟ୍ରନ୍ ନକ୍ଷତ୍ର

25. କେତୋଟି ନକ୍ଷତ୍ରମଣ୍ଡଳକୁ ନେଇ ରାଶିମଣ୍ଡଳ ଗଠିତ ?
(କ) 15 (ଖ) 18 (ଗ) 20 (ଘ) 12

26. କେଉଁ ପ୍ରକାର ତୀବ୍ର ଘୂର୍ଣ୍ଣନକାରୀ ନକ୍ଷତ୍ରକୁ ପଲ୍‌ସାର କୁହାଯାଏ ?
(କ) ପଜିଟ୍ରନ୍ (ଖ) ନିଉଟ୍ରନ୍ (ଗ) ଉଜ୍ଜ୍ୱଳ (ଘ) ବାମନ

27. କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଜଣେ ଗବେଷକ ଛାତ୍ର 1976 ମସିହାରେ ପ୍ରଥମ ପଲ୍‌ସାରକୁ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆବିଷ୍କାର କରିଥିଲେ, ତାଙ୍କ ନାମ କ'ଣ ?
(କ) ଜୋସିଲିନ୍ ବେଲ୍ କର୍ଣ୍ଣେଲ୍ (ଖ) ଆଣ୍ଟୋନି ହେୱିସ୍
(ଗ) ମାର୍ଟିନ୍ ରାଇଲ୍ (ଘ) ଉଇଲିୟମ୍ ହକିଙ୍ଗ୍

28. କେଉଁ ଜ୍ୟୋତିର୍ବିତ୍ ପ୍ରଥମେ ଆମ ଛାୟାପଥ 'ଆକାଶଗଙ୍ଗା' ବାହାରେ ଅନ୍ୟ ଛାୟାପଥକୁ ଚିହ୍ନଟ କରିଥିଲେ ?
(କ) ସାର୍ ଫ୍ରେଡ୍ ହୋଏଲ୍ (ଖ) ଏଡୱଇନ୍ ପୋୱେଲ୍ ହବ୍ଲ
(ଗ) ଉଇଲିୟମ୍ ହରଶ୍ଚେଲ୍ (ଘ) କ୍ରିଷ୍ଟିୟାନ୍ ହିଉଜେନ୍ସ

29. ବ୍ଲାକ୍ ହୋଲ୍ ବା କୃଷ୍ଣଗର୍ତ୍ତ ନାମ ପ୍ରଥମେ କିଏ ବ୍ୟବହାର କରିଥିଲେ ?
(କ) ରୋଗର ପେନ୍‌ରୋଜ୍ (ଖ) ଷ୍ଟିଫେନ୍ ଉଇଲିୟମ୍ ହକିଙ୍ଗ୍
(ଗ) ଫ୍ରେଡ୍ ହୋଏଲ୍ (ଘ) ଜନ୍ ହୁଇଲର୍

30. ପ୍ରଥମ ଆବିଷ୍କୃତ 'ଶ୍ୱେତ ବାମନ' ନକ୍ଷତ୍ରର ନାମ କ'ଣ ?
(କ) ସିରିଅସ୍-ଖ (ଖ) କୁଇପରଙ୍କ ନକ୍ଷତ୍ର
(ଗ) 40 ଇରିଡ଼ାନି-ଖ (ଘ) ଆର୍ଦ୍ରା

31. ପ୍ରଥମ ଆବିଷ୍କୃତ 'କ୍ୱାସାରସ'ର ନାମ କ'ଣ ?
(ଖ) 3C-273 (ଖ) PKS 2000-330
(ଗ) OX-169 (ଘ) OQ-172

32. କିଏ କ୍ୱାସାରସ୍ ଆବିଷ୍କାର କରିଥିଲେ ?
(କ) ହରବର୍ଟ ଫ୍ରେଡ୍‌ମାନ୍ (ଖ) ଆସାଫ୍ ହଲ୍
(ଗ) ମାର୍ଟେନ୍ ସ୍କିମ୍‌ଟ (ଘ) ଆଲାନ୍ ସାଣ୍ଡେଜ୍

33. ସୂର୍ଯ୍ୟ କେଉଁ ଶ୍ରେଣୀର ନକ୍ଷତ୍ର ?
(କ) G (ଖ) F (ଗ) O (ଘ) K

34. ସୂର୍ଯ୍ୟ କେଉଁ ପ୍ରକାରର ନକ୍ଷତ୍ର ?
(କ) ଲୋହିତ ଦାନବ (ଖ) ଶ୍ୱେତ ବାମନ
(ଗ) ହଳଦିଆ ବାମନ (ଘ) ଅତିଦାନବ

35. କେଉଁ ନକ୍ଷତ୍ରଟି ହେଉଛି ଗୋଟିଏ ଲୋହିତ ଅତିଦାନବ ?
(କ) ଅଭିଜିତ (Vega) (ଖ) ସୋମ (Caster)
(ଗ) ଛାୟାଗ୍ନି (Deneb) (ଘ) ଜ୍ୟେଷ୍ଠା (Antares)

36. କେଉଁ ନକ୍ଷତ୍ରଟି ପ୍ରକୃତରେ ଛଅଟି ତାରାକୁ ନେଇ ଗଠିତ ?
(କ) ବାଣରାଜା (Rigel) (ଖ) ସୋମ (Caster)
(ଗ) ରୋହିଣୀ (Alderbaran) (ଘ) ମତ୍ସ୍ୟମୁଖ (Fomal haut)

37. ସବୁଠାରୁ ଦକ୍ଷିଣରେ ଥିବା ନକ୍ଷତ୍ର କେଉଁଟି ?
(କ) ସିଗ୍‌ମା ଓକ୍‌ଟାଣ୍ଟିସ୍ (Sigma Octantis)

(ଖ) ଲାମ୍ୱଡ଼ା ଓକ୍‌ଟାଣ୍ଟିସ୍ (Lambda Octantis)
(ଗ) ଟାଉ ଓକ୍‌ଟାଣ୍ଟିସ୍ (Tau Octants)
(ଘ) କେହି ନୁହେଁ

38. ସୂର୍ଯ୍ୟର ନିକଟତମ ନକ୍ଷତ୍ର କିଏ ?
(କ) ଜୟ (Alpha Centauri) (ଖ) ବିଜୟ (Beta Centauri)
(ଗ) ପ୍ରକ୍‌ସିମା ସେଣ୍ଟାଉରି (Proxima Centauri) (ଘ) 3 ସେଣ୍ଟାଉରି

39. କେଉଁ ପ୍ରକାର ଗାଲାକ୍‌ସି ବିଶ୍ୱରେ ଅଧିକ ଦେଖାଯାଏ ?
(କ) ସ୍ପାଇରାଲ (Spiral) (ଖ) ଇଲିପ୍‌ଟିକାଲ
(ଗ) ଅନିୟମିତ (ଘ) କେହି ନୁହେଁ

40. ଆମ ଗାଲାକ୍‌ସି 'ଆକାଶ ଗଙ୍ଗା' କେଉଁ ପ୍ରକାରର ?
(କ) ସ୍ପାଇରାଲ୍ (ଖ) ଇଲିପ୍‌ଟିକାଲ (ଗ) ଅନିୟମିତ (ଘ) କୌଣସିଟି ନୁହେଁ

41. କୌଣସି ନକ୍ଷତ୍ରମଣ୍ଡଳର ତୃତୀୟ ଉଜ୍ଜ୍ୱଳତମ ନକ୍ଷତ୍ର ପାଇଁ କେଉଁ ଚିହ୍ନ ବ୍ୟବହୃତ ହୁଏ ?
(କ) ଆଲ୍‌ଫା (ଖ) ବିଟା (ଗ) ଗାମା (ଘ) ଓମେଗା

42. କାଳପୁରୁଷ ନକ୍ଷତ୍ରମଣ୍ଡଳର ବେଲ୍‌ଟରେ କେତୋଟି ନକ୍ଷତ୍ର ଅଛି ?
(କ) 3 (ଖ) 5 (ଗ) 7 (ଘ) 9

43. ଧ୍ରୁବତାରା କେଉଁ ନକ୍ଷତ୍ରମଣ୍ଡଳରେ ଅଛି ?
(କ) ସପ୍ତର୍ଷିମଣ୍ଡଳ (Ursa Major)
(ଖ) ଲଘୁ ସପ୍ତର୍ଷିମଣ୍ଡଳ (Ursa Minor)
(ଗ) ସିଫିଅସ୍ (Cepheus) (ଘ) ସେଣ୍ଟାଉରସ୍ (Centaurus)

44. ବିଶ୍ୱରେ କେତେ ପ୍ରକାର ଗାଲାକ୍‌ସି ଅଛି ?
(କ) 3 (ଖ) 4 (ଗ) 5 (ଘ) 6

45. 'ତାରା ଖସିଲା' କହିଲେ କାହାକୁ ବୁଝାଯାଏ ?
(କ) ନକ୍ଷତ୍ର (ଖ) ଉଲ୍‌କା (ଗ) ଧୂମକେତୁ (ଘ) ସୁପରନୋଭା

46. 'ଚନ୍ଦ୍ରଶେଖର ସୀମା' କେତେ ?
(କ) ସୂର୍ଯ୍ୟର 1.4 ଗୁଣ (ଖ) ସୂର୍ଯ୍ୟର 4 ଗୁଣ
(ଗ) ସୂର୍ଯ୍ୟର 10 ଗୁଣ (ଘ) ନିର୍ଦ୍ଦିଷ୍ଟ ନାହିଁ

47. ନକ୍ଷତ୍ରଟିଏ ଆମଠାରୁ ଦୂରେଇ ଯାଉଛି ବୋଲି କେଉଁ ସଙ୍କେତରୁ ଜଣାପଡ଼ିବ ?
(କ) ନୀଳ ବିସ୍ଥାପନ (ଖ) ସବୁଜ ବିସ୍ଥାପନ
(ଗ) ଲାଲ ବିସ୍ଥାପନ (ଘ) ନିର୍ଦ୍ଦିଷ୍ଟ ନାହିଁ
48. ସିଆଗ୍ନସ-ଏକ୍ସ-1 (Cygnus X-1) କେଉଁ ପ୍ରକାର ନକ୍ଷତ୍ର ?
(କ) ନିଉଟ୍ରନ୍ ନକ୍ଷତ୍ର (ଖ) ପଲ୍‌ସାର (ଗ) ଶ୍ୱେତ ବାମନ (ଘ) କୃଷ୍ଣ ଗର୍ତ୍ତ
49. ଲଞ୍ଜାତାରା କହିଲେ କ'ଣ ବୁଝାଯାଏ ?
(କ) ଉଲ୍‌କା (ଖ) ସୁପରନୋଭା (ଗ) ଧୂମକେତୁ (ଘ) ଗ୍ରହାଣୁ
50. ବାଣରାଜା (Rigel) କେଉଁ ନକ୍ଷତ୍ରମଣ୍ଡଳରେ ଅଛି ?
(କ) ସପ୍ତର୍ଷିମଣ୍ଡଳ (ଖ) କାଳପୁରୁଷ ମଣ୍ଡଳ
(ଗ) କୃତ୍ତିକା ପୁଞ୍ଜ (ଘ) ପୁନର୍ବସୁ
51. ଆକାଶ ଗଙ୍ଗା ଗାଲାକ୍ସିର କେନ୍ଦ୍ରରେ କ'ଣ ଥିବାର ବୈଜ୍ଞାନିକମାନେ ଅନୁମାନ କରୁଛନ୍ତି ?
(କ) ସୂର୍ଯ୍ୟ (ଖ) କୃଷ୍ଣ ଗର୍ତ୍ତ (ଗ) ଗ୍ରହାଣୁ ବଳୟ (ଘ) ନକ୍ଷତ୍ର
52. ମୁଖ୍ୟତଃ କେଉଁ ପଦାର୍ଥକୁ ନେଇ ନକ୍ଷତ୍ର ଗଠିତ ?
(କ) ଗ୍ୟାସୀୟ ପେଣ୍ଡୁ (ଖ) ପଥର (ଗ) ବରଫ (ଘ) ଆଲୋକ
53. ସୂର୍ଯ୍ୟର ଆଣବିକ ପ୍ରତିକ୍ରିୟା ବନ୍ଦ ହୋଇଗଲେ ଏହାର ଅବଶିଷ୍ଟ ଅଂଶକୁ କ'ଣ କୁହାଯିବ ? (ସୂର୍ଯ୍ୟରେ ଉଦ୍‌ଜାନ ଶେଷ ହୋଇଗଲେ ଏଥିରେ ଆଣବିକ ପ୍ରତିକ୍ରିୟା ବନ୍ଦ ହୋଇଯିବ । ଏହି ପ୍ରତିକ୍ରିୟାରେ ଉଦ୍‌ଜାନ ହିଲିୟମ୍‌ରେ ପରିଣତ ହୋଇ ପ୍ରଚୁର ଶକ୍ତି ମିଳିଥାଏ ।)
(କ) ନିଉଟ୍ରନ ନକ୍ଷତ୍ର (ଖ) ପଲସାର
(ଗ) କୃଷ୍ଣଗର୍ତ୍ତ (ଘ) ଶ୍ୱେତ ବାମନ ନକ୍ଷତ୍ର
54. ପୃଥିବୀର ବୟସ କେତେ ?
(କ) ୩ ବିଲିୟନ୍ ବର୍ଷ (ଖ) ୫ ବିଲିୟନ୍ ବର୍ଷ
(ଗ) ୭ ବିଲିୟନ୍ ବର୍ଷ (ଘ) ୧୦ ବିଲିୟନ୍ ବର୍ଷ
55. କେଉଁ ଜ୍ୟୋତିର୍ବିଦୀୟ ପିଣ୍ଡରୁ ଆଲୋକ ମଧ୍ୟ ବାହାରିପାରେ ନାହିଁ ?
(କ) ପଲସାର (ଖ) ଧୂମକେତୁ (ଗ) କୃଷ୍ଣଗର୍ତ୍ତ (ଘ) ଶ୍ୱେତ ବାମନ ନକ୍ଷତ୍ର

---

## ଉତ୍ତର

| | | | | | |
|---|---|---|---|---|---|
| 1 - ଖ | 2 - କ | 3 - ଘ | 4 - ଗ | 5 - ଗ | 6 - କ |
| 7 - ଘ | 8 - ଖ | 9 - ଗ | 10 - କ | 11 - ଗ | 12 - ଖ |
| 13 - ଗ | 14 - ଘ | 15 - ଘ | 16 - କ | 17 - ଖ | 18 - ଗ |
| 19 - କ | 20 - କ | 21 - ଗ | 22 - ଖ | 23 - ଖ | 24 - ଗ |
| 25 - ଘ | 26 - ଖ | 27 - କ | 28 - ଖ | 29 - ଘ | 30 - କ |
| 31 - କ | 32 - ଗ | 33 - କ | 34 - ଗ | 35 - କ | 36 - ଖ |
| 37 - କ | 38 - ଗ | 39 - କ | 40 - କ | 41 - ଗ | 42 - କ |
| 43 - ଖ | 44 - କ | 45 - ଖ | 46 - କ | 47 - ଗ | 48 - ଘ |
| 49 - ଗ | 50 - ଖ | 51 - ଖ | 52 - କ | 53 - ଘ | 54 - ଖ |
| 55 - ଗ | | | | | |

—

# ୪ । ମହାକାଶ ଅଭିଯାନ

1. ଚନ୍ଦ୍ରରେ ପାଦ ଦେବାରେ ଦ୍ୱିତୀୟ ମହାକାଶଚାରୀ କିଏ ?
(କ) ନିଲ୍ ଆର୍ମଷ୍ଟ୍ରଙ୍ଗ୍ (ଖ) ଏଡ୍‌ଉଇନ୍ ଆଲ୍‌ଡ୍ରିନ୍
(ଗ) ଚାର୍ଲସ୍ କୋନ୍‌ରାଡ୍ (ଘ) ଏମାନଙ୍କ ମଧ୍ୟରୁ କେହି ନୁହେଁ
2. ଆମେରିକାର ପ୍ରଥମ ମହାକାଶ କେନ୍ଦ୍ରର ନାମ କ'ଣ ଥିଲା ?
(କ) ମିର୍ (ଖ) ସ୍କାଏଲାବ୍ (ଗ) ଏଣ୍ଟରପ୍ରାଇଜ୍ (ଘ) ଇଗଲ୍ ଆଏ
3. 1959 ମସିହାରେ ପ୍ରଥମ ସଂବେଦୀ (Probe) ଚନ୍ଦ୍ରପୃଷ୍ଠରେ ପହଞ୍ଚିଲା—ଏହାର ନାମ କ'ଣ ?
(କ) ଇଗଲ୍ (ଖ) ସର୍ଟେର୍ଣ୍ଣ-5 (ଗ) ଲୁନା-2 (ଘ) ଲୁନାର ପ୍ରସ୍ପେକ୍ଟର
4. ମାଗେଲାନ୍ ମହାକାଶ ପ୍ରୋବ୍ କେଉଁ ଗ୍ରହ ଅଭିଯାନରେ ଯାଇଥିଲା ?
(କ) ବୃହସ୍ପତି (ଖ) ମଙ୍ଗଳ (ଗ) ଶନି (ଘ) ଶୁକ୍ର
5. 2004 ମସିହାରେ କେଉଁ ମହାକାଶଯାନ ଶନି ନିକଟରେ ପହଞ୍ଚିଛି ?
(କ) ଭୟେଜର-2 (ଖ) ସୋହୋ (ଗ) ଉଲିସେସ୍ (ଘ) କାସିନି
6. ପ୍ରଥମ କୃତ୍ରିମ ଉପଗ୍ରହର ନାମ କ'ଣ ? ଏହା ପୂର୍ବତନ ସୋଭିଏତ୍ ରୁଷ ମହାକାଶକୁ ପଠାଇଥିଲା ।
(କ) ଭୋୟେଜର (ଖ) ସ୍ପୁଟନିକ-୧ (ଗ) ଗାଲିଲିଓ (ଘ) ଲୁନା
7. ଭାରତର ପ୍ରଥମ କୃତ୍ରିମ ଉପଗ୍ରହର ନାମ କ'ଣ ?
(କ) ଭାସ୍କର (ଖ) ଆର୍ଯ୍ୟଭଟ୍ଟ (ଗ) ରୋହିଣୀ (ଘ) ଇନ୍‌ସାଟ୍
8. ଭାରତ କେବେ ପ୍ରଥମ କୃତ୍ରିମ ଉପଗ୍ରହ ମହାକାଶକୁ ପଠାଇଥିଲା ?
(କ) 1972 (ଖ) 1975 (ଗ) 1977 (ଘ) 1982
9. ଭାରତର ପ୍ରଥମ ମହାକାଶଚାରୀ କିଏ ?
(କ) ରାକେଶ ଶର୍ମା (ଖ) କଳ୍ପନା ଚାୱ୍‌ଲା
(ଗ) ଚନ୍ଦ୍ରଶେଖର ଭେଙ୍କଟରମଣ (ଘ) କସ୍ତୁରୀ ରଙ୍ଗରାଜନ
10. ପୃଥିବୀର ପ୍ରଥମ ମହାକାଶଚାରୀ କିଏ ?
(କ) ୟୁରି ଗାଗାରିନ୍ (ଖ) ନିଲ୍ ଆର୍ମଷ୍ଟ୍ରଙ୍ଗ୍
(ଗ) ଭାଲେଣ୍ଟିନା ତେରେସ୍କୋଭା (ଘ) ଆଲାନ୍ ସେପାର୍ଡ

11. ଚନ୍ଦ୍ରପୃଷ୍ଠକୁ କେଉଁ ମହାକାଶଯାନ ପ୍ରଥମ ଥର ପାଇଁ ମନୁଷ୍ୟ ପଠାଇଲା ?
(କ) ଆପୋଲୋ–୭ (ଖ) ଆପୋଲୋ–୯
(ଗ) ଆପୋଲୋ–୧୧ (ଘ) ଆପୋଲୋ–୧୩

12. ପ୍ରଥମ ମହାକାଶ ସଟଲଯାନର ନାମ କ'ଣ ?
(କ) କଲମ୍ବିଆ (ଖ) ଡିସ୍କଭରୀ
(ଗ) ଚ୍ୟାଲେଞ୍ଜର (ଘ) ଏଣ୍ଡୋଭର

13. ନେପଚୁନ୍ ନିକଟ ଦେଇ କେଉଁ ମହାକାଶଯାନ ପ୍ରଥମେ ଯାଇଥିଲା ?
(କ) ମେରାଇନର (ଖ) ଭାଇକିଙ୍ଗ୍
(ଗ) ଭୟେଜର (ଘ) ଗାଲିଲିଓ

14. ରକେଟ କେଉଁ ଦେଶରେ ଉଦ୍ଭାବିତ ହୋଇଥିଲା ?
(କ) ଭାରତ (ଖ) ଚୀନ (ଗ) ଜର୍ମାନୀ (ଘ) ଇଂଲଣ୍ଡ

15. ତରଳ ଇନ୍ଧନ ବିଶିଷ୍ଟ ରକେଟର ଉଦ୍ଭାବକ କିଏ ?
(କ) ରବର୍ଟ ଗୋଦାର୍ଡ଼ (ଖ) ହରମାନ୍ ଓବେର୍ଥ
(ଗ) ଓ୍ୱେର୍ଣ୍ଣର ଭନ୍ ବ୍ରାଉନ୍ (ଘ) କୋନ୍‌ଷ୍ଟାଣ୍ଟିନ୍ ସିଓଲକୋଭିସ୍କି

16. ଚନ୍ଦ୍ରପୃଷ୍ଠରେ ପାଦଦେବାରେ ପ୍ରଥମ ମହାକାଶଚାରୀ କିଏ ?
(କ) ନିଲ୍ ଆର୍ମଷ୍ଟ୍ରଙ୍ଗ୍ (ଖ) ଏଡ୍‌ଉଇନ୍ ଆଲଡ୍ରିନ୍
(ଗ) ଚାର୍ଲସ୍ କୋନରାଡ୍ (ଘ) ୟୁରି ଗାଗାରିନ୍

17. 2003 ମସିହାରେ କେଉଁ ମହାକାଶ ସଟଲଯାନ ଦୁର୍ଘଟଣାରେ ଭାରତୀୟ ମହାକାଶଚାରୀ କଳ୍ପନା ଚାଓ୍ୱଲା ମୃତ୍ୟୁବରଣ କରିଥିଲେ ?
(କ) ଚ୍ୟାଲେଞ୍ଜର (ଖ) ଏଣ୍ଡୋଭର
(ଗ) ଡିସ୍କଭରୀ (ଘ) କଲମ୍ବିଆ

18. ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଥମ କୃତ୍ରିମ ଉପଗ୍ରହର ନାମ କ'ଣ ?
(କ) ଭୋୟେଜର (ଖ) ପାଥ ଫାଇଣ୍ଡର
(ଗ) ଏକ୍ସପ୍ଲୋରର–୧ (ଘ) ଆପୋଲୋ

19. ପ୍ରଥମ ତରଳ ଇନ୍ଧନଯୁକ୍ତ ରକେଟ ପ୍ରଥମେ କିଏ ଉତ୍‌କ୍ଷେପଣ କରିଥିଲେ ?
(କ) ରବର୍ଟ ଗୋଡ଼ାର୍ଡ଼ (ଖ) ଆଇଜାକ୍ ନିଉଟନ୍
(ଗ) ଉଇଲିୟମ୍ କନ୍‌ଗ୍ରିଭ୍ (ଘ) ହରମାନ୍ ଓବେର୍ଥ

20. ମହାକାଶ ଅଭିଯାନରେ ତରଳ ଇନ୍ଧନଯୁକ୍ତ ରକେଟରେ କ'ଣ ନେବା ନିହାତି ଦରକାର ?
(କ) ଅମ୍ଳଜାନ (ଖ) ଯବକ୍ଷାରଜାନ (ଗ) ହିଲିୟମ୍ (ଘ) ଉଦ୍‌ଜାନ

21. କେଉଁ ଆମେରିକୀୟ ପ୍ରଥମେ ମହାକାଶକୁ ଯାଇଥିଲେ ?
(କ) ଜନ୍ ଗ୍ଲେନ୍ (ଖ) ନିଲ୍ ଆର୍ମଷ୍ଟ୍ରଙ୍ଗ୍
(ଖ) ଆଲାନ୍ ସେପାର୍ଡ଼ (ଘ) ଜିମ୍ ଲୋଭେଲ୍

22. ମନୁଷ୍ୟବିହୀନ ମହାକାଶଯାନ ଚନ୍ଦ୍ର ଏବଂ ନିମ୍ନଲିଖିତ କେଉଁ ଗ୍ରହଗୁଡ଼ିକୁ ପଠାଯାଇଛି ?
(କ) କେବଳ ମଙ୍ଗଳ (ଖ) ମଙ୍ଗଳ ଓ ଶୁକ୍ର
(ଗ) ବୁଧ ଓ ଶୁକ୍ର (ଘ) ମଙ୍ଗଳ, ଶୁକ୍ର ଓ ଶନି

23. 1976 ମସିହାରେ ମଙ୍ଗଳ ପୃଷ୍ଠରେ ଅବତରଣ କରିଥିବା ମହାକାଶ ଯାନର ନାମ କ'ଣ ?
(କ) ମେରାଇନର–୪ (ଖ) ମେରାଇନର– ୯
(ଗ) ଭାଇକିଙ୍ଗ୍–୧ (ଘ) ପାଥ ଫାଇଣ୍ଡର

24. 2004 ମସିହା ଜାନୁଆରୀ ମାସରେ ମଙ୍ଗଳ ପୃଷ୍ଠରେ ଅବତରଣ କରିଥିବା ଭ୍ରମଣଶୀଳ ଚକଲଗା ଗାଡ଼ିର ନାମ କ'ଣ ?
(କ) ସ୍ପିରିଟ୍ (ଖ) ଇଗଲ୍ (ଗ) ବିଗଲ୍ (ଘ) ସୋୟୁଜ୍

25. କେଉଁ ଗ୍ରହର ଅଧ୍ୟୟନ ପାଇଁ ମେରାଇନର, ଭାଇକିଙ୍ଗ୍ ଏବଂ ପାଥ୍ ଫାଇଣ୍ଡର ମହାକାଶଯାନ ପଠାଯାଇଥିଲା ?
(କ) ପୃଥିବୀ (ଖ) ନେପ୍ଚୁନ୍ (ଗ) ବୃହସ୍ପତି (ଘ) ମଙ୍ଗଳ

26. କେଉଁ ମହାଜାଗତିକ ବସ୍ତୁର ଅଧ୍ୟୟନ ପାଇଁ ଭେଗା–୧, ପ୍ଲାନେଟ୍–ଏ ଏବଂ ଗିଓଟୋ ମହାକାଶଯାନ ପଠାଯାଇଥିଲା ?
(କ) ମଙ୍ଗଳ (ଖ) ଟିଟାନ୍
(ଗ) ହ୍ୟାଲେ ଧୂମକେତୁ (ଘ) ହେଲ୍-ବପ୍ ଧୂମକେତୁ

27. ଭାରତ ଚନ୍ଦ୍ରକୁ ପଠାଇଥିବା ମହାକାଶଯାନର ନାମ କ'ଣ ?
(କ) ଚନ୍ଦ୍ରଯାନ–୧ (ଖ) ଭାରତଯାନ
(ଗ) ଇସ୍ରୋଯାନ (ଘ) ଆର୍ଯ୍ୟଭଟ୍ଟ

28. କେଉଁ ଭାରତୀୟ ବୈଜ୍ଞାନିକ ନାମରେ ଆମେରିକା ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ମହାକାଶରେ ସ୍ଥାପନ କରିଛି ?
(କ) ଆର୍ଯ୍ୟଭଟ୍ଟ (ଖ) ମେଘନାଦ ଶାହା
(ଗ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍ (ଘ) କସ୍ତୁରୀ ରଙ୍ଗନ୍

29. କେଉଁ ଗ୍ରହକୁ ମନୁଷ୍ୟ ପଠାଇବା ପାଇଁ ଆମେରିକା ସ୍ଥିର କରିଛି ?
(କ) ଶୁକ୍ର (ଖ) ମଙ୍ଗଳ (ଗ) ବୃହସ୍ପତି (ଘ) ଶନି

30. ଭାରତର ମହାକାଶ ଗବେଷଣା କେନ୍ଦ୍ର 'ଇସ୍ରୋ'ର ମୁଖ୍ୟ କାର୍ଯ୍ୟାଳୟ କେଉଁଠି ଅଛି ?
(କ) ମୁମ୍ବାଇ (ଖ) ଅହମଦାବାଦ (ଗ) ଦିଲ୍ଲୀ (ଖ) ବାଙ୍ଗାଲୋର

31. ୟୁରି ଗାଗାରିନ୍‌ଙ୍କୁ ମହାକାଶକୁ ନେଇ ଯାଇଥିବା ମହାକାଶଯାନର ନାମ କ'ଣ ?
(କ) ସ୍ପୁଟନିକ୍—୧ (ଖ) ସ୍ପୁଟନିକ୍—୨
(ଗ) ଏକ୍ସ୍‌ପ୍ଲୋରର (ଘ) ଭୋଷ୍ଟୋକ—୧

32. ଭୂସ୍ଥିର କକ୍ଷରେ ଅବସ୍ଥାପିତ ହୋଇଥିବା ପ୍ରଥମ ଭାରତୀୟ ଉପଗ୍ରହର ନାମ କ'ଣ ?
(କ) ଆପଲ୍ (ଖ) ଆଇ.ଆର୍.ଏସ୍.
(ଖ) ଇନ୍‌ସାଟ୍—୧କ (ଘ) ଇନ୍‌ସାଟ୍—୨କ

33. ପୃଥିବୀର ପ୍ରଥମ ମହିଳା ମହାକାଶଚାରୀ କିଏ ?
(କ) ସାଲି ରାଇଡ୍ (ଖ) କଳ୍ପନା ଚାଓ୍ୱଲା
(ଗ) ଭାଲେଣ୍ଟିନା ତେରେସ୍କୋଭା (ଘ) ଏଥିରୁ କେହି ନୁହନ୍ତି

34. ନିଜସ୍ୱ ଉତ୍‌କ୍ଷେପଣଯାନରୁ ଭାରତ ନିଜ ଦେଶରୁ ମହାକାଶକୁ ପଠାଇଥିବା ପ୍ରଥମ ଉପଗ୍ରହର ନାମ କ'ଣ ?
(କ) ରୋହିଣୀ (ଖ) ଆର୍ଯ୍ୟଭଟ୍ଟ (ଗ) ଭାସ୍କର (ଘ) ଇନ୍‌ସାଟ୍—୧କ

35. ଜୀବନ୍ତ କୁକୁର 'ଲାଇକା'କୁ ମହାକାଶକୁ ନେଇଥିବା ମହାକାଶଯାନର ନାମ କ'ଣ ?
(କ) ସ୍ପୁଟନିକ—୨ (ଖ) ସୋୟୁଜ—୨
(ଗ) ଏକ୍ସପ୍ଲୋରର (ଘ) ସ୍ପୁଟନିକ—୧

36. ଭାରତର ପ୍ରଥମ ମହାକାଶଚାରୀ ରାକେଶ ଶର୍ମା କେଉଁ ଯାନରେ ମହାକାଶକୁ ଯାଇଥିଲେ ?
(କ) ଭୋଷ୍ଟୋକ (ଖ) ସୋୟୁଜ—ଟି ୧୧
(ଗ) ସାଲ୍ୟୁଟ୍—୭ (ଘ) ସାଲ୍ୟୁଟ୍—୪

37. ମହାକାଶରେ ଚାଲିବାରେ ପ୍ରଥମ ମହାକାଶଚାରୀ କିଏ ?
(କ) ୟୁରି ଗାଗାରିନ୍ (ଖ) ନିଲ୍ ଆର୍ମଷ୍ଟ୍ରଙ୍ଗ୍
(ଗ) ଏଡ୍‌ଉଇନ୍ ଆଲଡ୍ରିନ୍ (ଘ) ଆଲେକ୍‌ସେଇ ଲିଓନୋଭ୍

38. 1971 ମସିହାରେ ସୋଭିଏଟ ରୁଷ ମହାକାଶକୁ ପଠାଇଥିବା ପ୍ରଥମ ମହାକାଶ କେନ୍ଦ୍ରର ନାମ କ'ଣ ?
(କ) ସ୍କାଏଲାବ୍ (ଖ) ସୋୟୁଜ (ଗ) ସାଲ୍ୟୁଟ–୧ (ଘ) ମିର୍
39. ଚନ୍ଦ୍ରପୃଷ୍ଠରେ ପହଞ୍ଚିବାରେ ପ୍ରଥମ ମହାକାଶଯାନର ନାମ କ'ଣ ?
(କ) ଲୁନା–୨ (ଖ) ଆପୋଲୋ (ଗ) ଲୁନା–୨୪ (ଘ) ମେରାଇନର
40. ପୃଥିବୀର ମାଧ୍ୟାକର୍ଷଣକୁ ଅତିକ୍ରମ କରି ମହାକାଶକୁ ଯିବା ପାଇଁ ମହାକାଶଯାନର ନିମ୍ନବେଗ କେତେ ହେବା ଦରକାର ?
(କ) ସେକେଣ୍ଡ ପ୍ରତି 11,200 ମିଟର
(ଖ) ସେକେଣ୍ଡ ପ୍ରତି 12,000 ମିଟର
(ଗ) ସେକେଣ୍ଡ ପ୍ରତି 8,800 ମିଟର
(ଘ) ସେକେଣ୍ଡ ପ୍ରତି 15,500 ମିଟର
41. ମହାକାଶଯାତ୍ରାର ଜନକ ଭାବେ କୋନ୍‌ଷ୍ଟାଣ୍ଟିନ୍ ସିଓଲ୍‌କୋଭ୍‌ସ୍କି, ରବର୍ଟ ଗୋଡ୍ଡାର୍ଡ୍ ଓ ନିମ୍ନ ମଧ୍ୟରୁ କାହାକୁ ଗଣାଯାଏ ?
(କ) ଜେମ୍‌ସ ଆଣ୍ଡରସନ୍ (ଖ) ଜନ୍ ରସ୍କ
(ଗ) ହରମାନ୍ ଓବେରଥ୍ (ଘ) କେହି ନୁହନ୍ତି
42. ସ୍କାଏଲାବ୍–୪ ମହାକାଶ କେନ୍ଦ୍ର ଅଭିଯାନର ସମୟ କେତେ ଥିଲା ?
(କ) 65 ଦିନ (ଖ) 132 ଦିନ (ଗ) 84 ଦିନ (ଘ) 92 ଦିନ
43. କେଉଁ ଗ୍ରହର ଅନୁଧ୍ୟାନ ପାଇଁ ପାଇଓନିୟର–୧୧ ମହାକାଶଯାନକୁ ପଠାଯାଇଥିଲା ?
(କ) ଶୁକ୍ର (ଖ) ମଙ୍ଗଳ (ଗ) ଶନି (ଘ) ବୃହସ୍ପତି
44. ଚନ୍ଦ୍ରପୃଷ୍ଠରେ ଶେଷଥର ପାଇଁ ପାଦ ଦେଇଥିବା ମହାକାଶଚାରୀ କିଏ ?
(କ) ଚାର୍ଲସ୍ ଡ୍ୟୁକ୍ (ଖ) ଆଲାନ୍ ବିନ୍
(ଗ) ଇଉଜିନ୍ ସରନାନ୍ (ଘ) ବଜ୍ ଆଲ୍‌ଡ୍ରିନ୍
45. ପୃଥିବୀକୁ ପରିକ୍ରମା କରିବାରେ ସବୁଠାରୁ ବୟସ୍କ ମହାକାଶଚାରୀ କିଏ ?
(କ) ଆଲାନ୍ ସେପାର୍ଡ୍ (ଖ) ଏଡ୍‌ଉଇନ୍ ଆଲ୍‌ଡ୍ରିନ୍
(ଗ) ରିଚାର୍ଡ୍ ଗୋର୍ଡୋନ୍ (ଘ) ଜନ୍ ଗ୍ଲେନ୍
46. ସବୁଠାରୁ ବୃହତ୍ତମ ମହାକାଶ କେନ୍ଦ୍ର କେଉଁଟି ?
(କ) ଆଇ.ଏସ୍.ଏସ୍. (ଖ) ସ୍କାଏଲାବ୍
(ଗ) ମିର (ଘ) ସାଲ୍ୟୁଟ–୭

47. ଏଥିମଧ୍ୟରୁ କେଉଁଟି କୃତ୍ରିମ ଉପଗ୍ରହ ନୁହେଁ ?
(କ) ଚନ୍ଦ୍ରା (ଖ) ଇନ୍‌ସାଟ୍ (ଗ) କଲମ୍ବିଆ (ଘ) ଏ.ଟି.ଏସ୍. ୬

48. ଭାରତର ପ୍ରଥମ ଉପଗ୍ରହ ଆର୍ଯ୍ୟଭଟ୍ଟକୁ ସୋଭିଏଟ୍ ରୁଷର କେଉଁ ଉତ୍କ୍ଷେପଣ ଯାନ ପୃଥିବୀ କକ୍ଷରେ ପହଞ୍ଚାଇଥିଲା ?
(କ) ଡେଲଟା (ଖ) ଏରିଆନେ (ଗ) ଭୋସ୍ତୋକ (ଘ) ସଟର୍ଣ୍ଣ

49. ଧୂମକେତୁ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା ପାଇଁ 2005 ମସିହାରେ ଡିପ୍ ସ୍ପେସ୍ ନାମକ ମହାକାଶଯାନକୁ ଗୋଟିଏ ଧୂମକେତୁ ସହ ସଂଘର୍ଷ କରାଯାଇଥିଲା, ଧୂମକେତୁଟିର ନାମ କ'ଣ ?
(କ) ହ୍ୟାଲେ (ଖ) ଟେମ୍ପେଲ୍—୧ (ଗ) ବିଏଲା (ଘ) ଏଙ୍କେ

50. 1999 ମସିହାରେ ମହାକାଶକୁ ଉତ୍କ୍ଷେପଣ କରାଯାଇଥିବା ଆମେରିକାର ଷ୍ଟାର ଡଷ୍ଟ ମହାକାଶଯାନ ଗୋଟିଏ ଧୂମକେତୁରୁ ଧୂଳି ସଂଗ୍ରହ କରି 2006 ମସିହାରେ ଭୂପୃଷ୍ଠକୁ ପଠାଇଛି, ଧୂମକେତୁଟିର ନାମ କ'ଣ ?
(କ) ହ୍ୟାଲେ (ଖ) ସୁଇଫ୍‌ଟ-ଟଟଲ୍
(ଗ) ୱାଇଲଡ୍—୨ (ଘ) ହେଲ୍-ବପ୍

## ଉତ୍ତର

| | | | | | |
|---|---|---|---|---|---|
| 1 - ଖ | 2 - ଖ | 3 - ଗ | 4 - ଘ | 5 - ଘ | 6 - ଖ |
| 7 - ଖ | 8 - ଖ | 9 - କ | 10 - କ | 11 - ଗ | 12 - କ |
| 13 - ଗ | 14 - ଖ | 15 - କ | 16 - କ | 17 - ଘ | 18 - ଗ |
| 19 - କ | 20 - କ | 21 - ଗ | 22 - ଖ | 23 - ଘ | 24 - କ |
| 25 - ଘ | 26 - ଗ | 27 - କ | 28 - ଗ | 29 - ଖ | 30 - ଘ |
| 31 - ଘ | 32 - କ | 33 - ଗ | 34 - କ | 35 - କ | 36 - ଖ |
| 37 - ଘ | 38 - ଗ | 39 - କ | 40 - କ | 41 - ଗ | 42 - ଗ |
| 43 - ଘ | 44 - ଗ | 45 - ଘ | 46 - କ | 47 - ଗ | 48 - ଗ |
| 49 - ଖ | 50 - ଗ | | | | |

—

# ୫ । ପ୍ରାଚୀନ ଜ୍ୟୋତିର୍ବିଦ୍ୟା

1. କେଉଁ ଗ୍ରୀକ୍ ଦାର୍ଶନିକ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ସୌରକେନ୍ଦ୍ରିକ ବିଶ୍ୱର ପରିକଳ୍ପନା କରିଥିଲେ ?
   (କ) ଆରିଷ୍ଟୋଟଲ (ଖ) ଆରିଷ୍ଟାରକ୍ସ (ଗ) ଟଲେମି (ଘ) ହିରୋ
2. 140 ଖ୍ରୀଷ୍ଟାବ୍ଦରେ କେଉଁ ଗ୍ରୀକ୍ ଦାର୍ଶନିକ ଭୂକେନ୍ଦ୍ରିକ ବିଶ୍ୱର ମଡ଼େଲ ଉପସ୍ଥାପନ କରିଥିଲେ ?
   (କ) ଆରିଷ୍ଟୋଟଲ (ଖ) ଆରିଷ୍ଟାରକ୍ସ (ଗ) ଟଲେମି (ଘ) ହିରୋ
3. କେଉଁ ୟୁରୋପୀୟ ବୈଜ୍ଞାନିକଙ୍କୁ ସୌରକେନ୍ଦ୍ରିକ ମତବାଦର ସ୍ରଷ୍ଟା କୁହାଯାଏ ?
   (କ) ଗାଲିଲିଓ (ଖ) ଆରିଷ୍ଟୋଟଲ (ଗ) ଟଲେମି (ଘ) କୋପରନିକ୍ସ
4. କେଉଁ ଜ୍ୟୋତିର୍ବିତ୍ ସୌରକେନ୍ଦ୍ରିକ ମତବାଦକୁ ସମର୍ଥନ କରି କାରାବାସ ଭୋଗ କରିଥିଲେ ଏବଂ ଗୃହବନ୍ଦୀ ଥିବାବେଳେ ମୃତ୍ୟୁବରଣ କରିଥିଲେ ?
   (କ) ଗାଲିଲିଓ (ଖ) ଟଲେମି (ଗ) କୋପରନିକ୍ସ (ଘ) କେପଲର
5. କେଉଁ ଇଂରେଜ ବୈଜ୍ଞାନିକ ମାଧ୍ୟାକର୍ଷଣ ନିୟମ ଆବିଷ୍କାର କରିଥିଲେ ?
   (କ) ଗାଲିଲିଓ (ଖ) କୋପରନିକ୍ସ (ଗ) କେପଲର (ଘ) ନିଉଟନ୍
6. ଗ୍ରହଗୁଡ଼ିକ ବୃତ୍ତାକାର କକ୍ଷରେ ନୁହେଁ ଇଲିପ୍‌ଟିକାଲ କକ୍ଷରେ ଗତି କରନ୍ତି, ଏହା କିଏ ଆବିଷ୍କାର କରିଥିଲେ ?
   (କ) ଟଲେମି (ଖ) ଗାଲିଲିଓ (ଗ) କେପଲର (ଘ) ଟାଇକୋ ବ୍ରାହେ
7. କେଉଁ ଭାରତୀୟ ବୈଜ୍ଞାନିକ ପ୍ରଥମେ 'ସୌରକେନ୍ଦ୍ରିକ ବିଶ୍ୱ' ତଥ୍ୟ ଉପସ୍ଥାପନ କରିଥିଲେ, ମାତ୍ର ତାହା ଭାରତ ବାହାରେ ଜଣା ନଥିଲା ?
   (କ) ଆର୍ଯ୍ୟଭଟ୍ଟ (ଖ) ବ୍ରହ୍ମଗୁପ୍ତ (ଗ) ବରାହମିହିର (ଘ) ଭାସ୍କରାଚାର୍ଯ୍ୟ
8. ଗ୍ରହଗୁଡ଼ିକର ଘୂର୍ଣ୍ଣନ ସମ୍ବନ୍ଧୀୟ ତିନୋଟି ନିୟମକୁ କେଉଁ ଜ୍ୟୋତିର୍ବିତ୍ ଆବିଷ୍କାର କରିଥିଲେ ?
   (କ) ଗାଲିଲିଓ (ଖ) ନିଉଟନ୍ (ଗ) କେପଲର (ଘ) ଆଇନ୍‌ଷ୍ଟାଇନ୍
9. ଶୁକ୍ର କଳାକୁ କିଏ ଆବିଷ୍କାର କରିଥିଲେ ?
   (କ) ଗାଲିଲିଓ (ଖ) କେପଲର (ଗ) ଟାଇକୋ ବ୍ରାହେ (ଘ) କୋପରନିକ୍ସ

10. ପ୍ରାଚୀନ ଭାରତର କେଉଁ ଜ୍ୟୋତିର୍ବିତ୍ ଆକାଶର ନକ୍ଷତ୍ରମଣ୍ଡଳକୁ ପ୍ରଥମେ ଅଠେଇଶ ଭାଗରେ ବିଭକ୍ତ କରିଥିଲେ ?
(କ) ଆର୍ଯ୍ୟଭଟ୍ଟ (ଖ) ବ୍ରହ୍ମଗୁପ୍ତ (ଗ) ବରାହମିହିର (ଘ) ମହର୍ଷି ଗର୍ଗ
11. ନକ୍ଷତ୍ରଗୁଡ଼ିକର ତାଲିକା ପ୍ରଥମେ କିଏ ପ୍ରସ୍ତୁତ କରିଥିଲେ ?
(କ) ହିପାରକ୍‌ସ (ଖ) ଟଲେମି (ଗ) ଜୋହାନ୍ ବେୟର (ଘ) କେପଲର
12. ପ୍ରାଚୀନ ଭାରତୀୟ ଜ୍ୟୋତିର୍ବିତ୍ ଭାସ୍କରାଚାର୍ଯ୍ୟଙ୍କ ରଚିତ ଜ୍ୟୋତିର୍ବିଦ୍ୟା ପୁସ୍ତକର ନାମ କ'ଣ ?
(କ) ସୂର୍ଯ୍ୟ ସିଦ୍ଧାନ୍ତ (ଖ) ବ୍ରହ୍ମସ୍ଫୁଟ ସିଦ୍ଧାନ୍ତ
(ଗ) ସିଦ୍ଧାନ୍ତ ଶିରୋମଣି (ଘ) ଆର୍ଯ୍ୟ ସିଦ୍ଧାନ୍ତ
13. 'ସିଦ୍ଧାନ୍ତ ଦର୍ପଣ'ର ଲେଖକ କିଏ ?
(କ) ଆର୍ଯ୍ୟଭଟ୍ଟ (ଖ) ବ୍ରହ୍ମଗୁପ୍ତ (ଗ) ଜଗନ୍ନାଥ ସମ୍ରାଟ (ଘ) ସାମନ୍ତ ଚନ୍ଦ୍ରଶେଖର
14. ଜ୍ୟୋତିର୍ବିଦ୍ୟା ଗ୍ରନ୍ଥ 'ଆଲ୍‌ମାଜେଷ୍ଟ'ର ଲେଖକ କିଏ ?
(କ) ଟଲେମି (ଖ) ଆରିଷ୍ଟୋଟଲ (ଗ) ହିପାରକସ୍ (ଘ) କୋପରନିକ୍‌ସ
15. ଓଡ଼ିଆ ଜ୍ୟୋତିର୍ବିତ୍ ପଠାଣି ସାମନ୍ତ କେଉଁ ଗଡ଼ଜାତ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ ?
(କ) ଆଠଗଡ଼ (ଖ) ଖଣ୍ଡପଡ଼ା (ଗ) ନରସିଂହପୁର (ଘ) ବଡ଼ମ୍ବା
16. କେଉଁ ପ୍ରାଚୀନ ସଂସ୍କୃତ ଜ୍ୟୋତିର୍ବିଦ୍ୟା ଗ୍ରନ୍ଥ 'ସିନ୍ଦ୍‌ହିନ୍ଦ୍' ନାମରେ ପାର୍ସୀ ଭାଷାରେ ଅନୂଦିତ ହୋଇଛି ?
(କ) ଆର୍ଯ୍ୟଭଟ୍ଟୀୟ (ଖ) ବ୍ରହ୍ମସ୍ଫୁଟ ସିଦ୍ଧାନ୍ତ
(ଗ) ସିଦ୍ଧାନ୍ତ ଶିରୋମଣି (ଘ) ମହାସିଦ୍ଧାନ୍ତ
17. କେଉଁ ଗ୍ରୀକ୍ ବୈଜ୍ଞାନିକ ପ୍ରଥମେ ପୃଥିବୀର ଓଜନ ଆକଳନ କରିଥିଲେ ?
(କ) ପିଥାଗୋରାସ୍ (ଖ) ପ୍ଲାଟୋ (ଗ) ଆର୍କିମିଡ଼ିସ୍ (ଘ) ଇରାଟୋସ୍ଥେନିସ୍
18. 'ବୃହତ ସଂହିତା'ର ରଚୟିତା କିଏ ?
(କ) ଆର୍ଯ୍ୟଭଟ୍ଟ (ଖ) ବରାହମିହିର (ଗ) ବ୍ରହ୍ମଗୁପ୍ତ (ଘ) ଭାସ୍କରାଚାର୍ଯ୍ୟ
19. ଦିଲ୍ଲୀର ଯନ୍ତର ମନ୍ତର ପର୍ଯ୍ୟାବେକ୍ଷଣାଗାର କିଏ ନିର୍ମାଣ କରିଥିଲେ ?
(କ) ଆକବର (ଖ) ମାନସିଂହ (ଗ) ସୱାଇ ଜୟସିଂହ (ଘ) ଶାହାଜାହାନ
20. ଭାରତର କେଉଁ ଜ୍ୟୋତିର୍ବିତ୍‌ଙ୍କୁ ୟୁରୋପୀୟ ଜ୍ୟୋତିର୍ବିତ୍ ଟାଇକୋ ବ୍ରାହେଙ୍କ ସହ ତୁଳନା କରାଯାଏ ?
(କ) ଭାସ୍କରାଚାର୍ଯ୍ୟ (ଖ) ସାମନ୍ତ ଚନ୍ଦ୍ରଶେଖର
(ଗ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍ (ଘ) ମେଘନାଦ ଶାହା

21. ପୃଥିବୀର ସର୍ବ ପୁରାତନ ଜ୍ୟୋତିର୍ବିଦୀୟ ପର୍ଯ୍ୟବେକ୍ଷଣାଗାରର ଭଗ୍ନାବଶେଷ ବର୍ତ୍ତମାନ କେଉଁଠାରେ ଦେଖିବାକୁ ମିଳେ ?
(କ) ମିଶରର ଆଲେକ୍‌ଜାଣ୍ଡ୍ରିଆ (ଖ) ଇଂଲଣ୍ଡର ଷ୍ଟୋନହେଞ୍ଜ
(ଗ) ଭାରତର ଯନ୍ତର ମନ୍ତର (ଘ) ଇରାକର ବାଗଦାଦ୍

22. କେଉଁ ଗ୍ରୀକ୍ ଜ୍ୟୋତିର୍ବିତ୍‌ଙ୍କୁ ପର୍ଯ୍ୟବେକ୍ଷଣାତ୍ମକ ଜ୍ୟୋତିର୍ବିଜ୍ଞାନର ଜନକ କୁହାଯାଏ ?
(କ) ଇରାଟୋସ୍ଥିନିସ୍ (ଖ) ଆରିଷ୍ଟୋଟଲ୍ (ଗ) ଟଲେମି (ଘ) ହିପାରକସ୍

23. ଭାରତର କେଉଁ ବୈଜ୍ଞାନିକ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗର ପ୍ରକୃତ କାରଣ ଆବିଷ୍କାର କରିଥିଲେ ?
(କ) ବରାହମିହିର (ଖ) ଆର୍ଯ୍ୟଭଟ୍ଟ (ଗ) ଭାସ୍କରାଚାର୍ଯ୍ୟ (ଘ) ବ୍ରହ୍ମଗୁପ୍ତ

24. କୋପରନିକସ୍ କେଉଁ ଦେଶରେ ଜନ୍ମଗ୍ରହଣ କରିଥିଲେ ?
(କ) ଇଂଲଣ୍ଡ (ଖ) ଇଟାଲୀ (ଗ) ପୋଲାଣ୍ଡ (ଘ) ଅଷ୍ଟ୍ରିଆ

25. କୋପରନିକ୍‌ସଙ୍କ ସୌରକେନ୍ଦ୍ରିକ ମତବାଦକୁ ସମର୍ଥନ ଜଣାଇବାରୁ କେଉଁ ଜ୍ୟୋତିର୍ବିତ୍‌ଙ୍କୁ ଧର୍ମ ଅଦାଲତଦ୍ୱାରା ଜିଅନ୍ତା ପୋଡ଼ି ମାରି ଦିଆଯାଇଥିଲା ?
(କ) ଗାଲିଲିଓ (ଖ) ବ୍ରୁନୋ (ଗ) କେପ୍‌ଲର (ଘ) ଟାଇକୋ ବ୍ରାହେ

26. ଗ୍ରହ ଗତି ସମ୍ବନ୍ଧୀୟ ନିୟମ ପ୍ରଣୟନ କରିଥିବା ଜୋହାନ୍‌ସ କେପଲର କେଉଁ ବିଖ୍ୟାତ୍ ଜ୍ୟୋତିର୍ବିତ୍‌ଙ୍କର ଛାତ୍ର ଥିଲେ ?
(କ) ଗାଲିଲିଓ (ଖ) ନିଉଟନ୍
(ଗ) ଟାଇକୋ ବ୍ରାହେ (ଘ) ଉଇଲିୟମ୍ ହରଶ୍ଚେଲ୍

27. କେଉଁ ପ୍ରାଚୀନ ଜ୍ୟୋତିର୍ବିତ୍ ଉଜ୍ଜ୍ୱଳତା ଅନୁଯାୟୀ ନକ୍ଷତ୍ରଗୁଡ଼ିକୁ ଭାଗ କରିଥିଲେ ?
(କ) ଟଲେମି (ଖ) ହିପାରକସ୍ (ଗ) ଆର୍ଯ୍ୟଭଟ୍ଟ (ଘ) ଇରାଟୋସ୍ଥିନିସ୍

28. ପ୍ଲାନେଟାରିୟମ୍‌ର ଉଦ୍ଭାବକ କିଏ ?
(କ) ଆର୍କିମିଡିସ୍ (ଖ) ହିପାରକସ୍ (ଗ) ଇରାଟୋସ୍ଥିନିସ୍ (ଘ) ଟଲେମି

29. ପୃଥିବୀ ନିଜ ଅକ୍ଷ ଚାରିପଟେ ଘୂରୁଥିବାର ଏବଂ ଏହି ଘୂର୍ଣ୍ଣନର ସଠିକ ବେଗ କିଏ ପ୍ରଥମେ ପ୍ରକାଶ କରିଥିଲେ ?
(କ) ଟଲେମି (ଖ) ଆର୍ଯ୍ୟଭଟ୍ଟ (ଗ) ହିପାରକସ୍ (ଘ) ଆରିଷ୍ଟୋଟଲ

30. ସମରକନ୍ଦ (ବର୍ତ୍ତମାନ ଉଜବେକିସ୍ତାନରେ) ଠାରେ ଗୋଟିଏ ବିଶାଳ ପର୍ଯ୍ୟବେକ୍ଷଣାଗାର କିଏ ନିର୍ମାଣ କରିଥିଲେ ?
(କ) ଆଲ୍ କାଶି (ଖ) ଉଲୁଗ୍ ବେଗ୍ (ଗ) ଆଲା ଜେନ୍ (ଘ) ଓମାର ଖୟାମ୍

31. ବିଖ୍ୟାତ ଗ୍ରୀନ୍‌ଉଇଚ୍ ପର୍ଯ୍ୟବେକ୍ଷଣାଗାର କିଏ ପ୍ରତିଷ୍ଠା କରିଥିଲେ ?
(କ) ଜନ୍ ଫ୍ଲାମ୍‌ଷ୍ଟିଡ୍ (ଖ) ଏଡମଣ୍ଡ ହ୍ୟାଲେ
(ଗ) ଉଇଲିୟମ୍ ହରଶେଲ (ଘ) ସମ୍ରାଟ ଦ୍ୱିତୀୟ ଚାର୍ଲସ
32. ଜ୍ୟୋତିର୍ବିଜ୍ଞାନ ପ୍ରଥମେ କେଉଁଥିପାଇଁ ବ୍ୟବହୃତ ହେଉଥିଲା ?
(କ) ସମୟ ନିର୍ଦ୍ଧାରଣ (ଖ) ମନ୍ଦିର ନିର୍ମାଣ
(ଗ) ପୃଥିବୀର ମାପ (ଘ) ଜଳଯାତ୍ରା
33. ସୂର୍ଯ୍ୟ ଓ ଚନ୍ଦ୍ରର ଗତିକୁ ଜାଣିବାପାଇଁ 'ଷ୍ଟୋନ୍‌ହେଞ୍ଜେସ୍' (Stonehenges) କେଉଁଠାରେ ନିର୍ମିତ ହୋଇଥିଲା ?
(କ) ଫ୍ରାନ୍‌ସ (ଖ) ହାୱାଇ (ଗ) ଇଂଲଣ୍ଡ (ଘ) ଭାରତ
34. ପ୍ରାଚୀନ କାଳରେ କେଉଁ ନକ୍ଷତ୍ର ବାର୍ଷିକ ବନ୍ୟାର ପ୍ରାକ୍‌ସୂଚନା ଦେଉଥିଲା ?
(କ) ଲୁବ୍ଧକ (ଖ) ଆର୍ଦ୍ରା (ଗ) ରୋହିଣୀ (ଘ) ଛାୟାଗ୍ନି
35. ପ୍ରାଚୀନ ଭାରତୀୟ ଜ୍ୟୋତିର୍ବିଦ୍ୟାରେ ରାହୁ ଓ କେତୁ କାହାସହ ସଂଶ୍ଳିଷ୍ଟ ?
(କ) ଚନ୍ଦ୍ରର କଳା (ଖ) ଧୂମକେତୁ (ଗ) ସୁପରନୋଭା (ଘ) ଗ୍ରହଣ
36. ନିଜ ରାଜ୍ୟରେ ବ୍ୟବହାର ପାଇଁ କେଉଁ ଭାରତୀୟ ରାଜା ଦୂରବୀକ୍ଷଣ ଯନ୍ତ୍ର ନିର୍ମାଣ କରିଥିଲେ ?
(କ) ଶିବାଜୀ (ଖ) ସୱାଇ ଜୟସିଂହ ଦ୍ୱିତୀୟ
(ଗ) ସୁରଜମଲ୍ଲ (ଘ) ଶେରସାହ ସୁରୀ
37. କେଉଁ ମୋଗଲ ବାଦଶାହା ପ୍ରଥମେ ଜଣେ ୟୁରୋପୀୟ ଥୋମାସ୍ ରୋଏଙ୍କ ଠାରୁ ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ଦାନ ହିସାବରେ ପାଇଥିଲେ ?
(କ) ଜାହାଙ୍ଗିର (କ) ଆକବର (ଗ) ଆଉରଙ୍ଗଜେବ (ଘ) ଶାହାଜାହାନ
38. ୟୁରୋପୀୟ ଜ୍ୟୋତିର୍ବିଦ୍ୟା ମଧ୍ୟଯୁଗର ଭାରତକୁ କାହାଦ୍ୱାରା ଆସିଥିଲା ?
(କ) ଚର୍ଚ୍ଚ (ଖ) ଆରବୀୟ ପୁସ୍ତକ (ଗ) ଖ୍ରୀଷ୍ଟ ମିଶନାରୀ (ଘ) ନାବିକ
39. କେତେପ୍ରକାର ଜ୍ୟୋତିର୍ବିଦୀୟ ଗ୍ରନ୍ଥ 'ସିଦ୍ଧାନ୍ତ' ଅଛି ?
(କ) ତିନି (ଖ) ଚାରି (ଗ) ପାଞ୍ଚ (ଘ) ଛଅ
40. ପାହାଡ଼ର ଉଚ୍ଚତା ଓ ଜ୍ୟୋତିର୍ବିଦୀୟ ଗଣନା ପାଇଁ କେଉଁ ଭାରତୀୟ ଜ୍ୟୋତିର୍ବିତ୍ 'ମାନଯନ୍ତ୍ର' ନିର୍ମାଣ କରିଥିଲେ ?
(କ) ସୱାଇ ଜୟସିଂହ ଦ୍ୱିତୀୟ (ଖ) ଭାସ୍କରାଚାର୍ଯ୍ୟ
(ଖ) ଆର୍ଯ୍ୟଭଟ୍ଟ (ଘ) ସାମନ୍ତ ଚନ୍ଦ୍ରଶେଖର

41. ଭାରତର ସର୍ବପୁରାତନ ଜ୍ୟୋତିର୍ବିଦ୍ୟା ଗ୍ରନ୍ଥ କେଉଁଟି ?
(କ) ଗ୍ରହ ଲାଘବ (ଖ) ବେଦାଙ୍ଗ ଜ୍ୟୋତିଷ
(ଗ) ସୂର୍ଯ୍ୟ ସିଦ୍ଧାନ୍ତ (ଘ) ଆର୍ଯ୍ୟଭଟ୍ଟୀୟ

42. ଭାରତୀୟ ଜ୍ୟୋତର୍ବିଦ୍ୟାରେ ପ୍ରଚଳିତ 'ମହାଯୁଗ' କେତେ ବର୍ଷ ?
(କ) 4320 ବର୍ଷ (ଖ) 432 ବର୍ଷ
(ଗ) 4,320,000 ବର୍ଷ (ଘ) 4,320,000,000 ବର୍ଷ

43. ମୁସଲମାନଙ୍କ କ୍ୟାଲେଣ୍ଡର (ପଞ୍ଜିକା) କାହାଉପରେ ପର୍ଯ୍ୟବସିତ ?
(କ) ସୂର୍ଯ୍ୟର ଗତି (ଖ) ନକ୍ଷତ୍ରର ଗତି (ଗ) ଚନ୍ଦ୍ରର କଳା (ଘ) ମଙ୍ଗଳର ଗତି

44. ମୋଗଲ ବାଦଶାହ ଆକବରଙ୍କ ସମୟରେ କେଉଁ ପଞ୍ଜିକା ପ୍ରଚଳିତ ହୋଇଥିଲା ?
(କ) ତାରିଖ୍ ଇଲାହି (ଖ) ହିଜରା କ୍ୟାଲେଣ୍ଡର
(ଗ) ଜୁଲିଆନ୍ କ୍ୟାଲେଣ୍ଡର (ଘ) ଗ୍ରେଗୋରିଆନ୍ କ୍ୟାଲେଣ୍ଡର

45. ବର୍ତ୍ତମାନ ପ୍ରଚଳିତ କ୍ୟାଲେଣ୍ଡରକୁ ପ୍ରଥମେ କ'ଣ କୁହାଯାଉଥିଲା ?
(କ) ଜୁଲିଆନ୍ କ୍ୟାଲେଣ୍ଡର (ଖ) ଗ୍ରେଗୋରିଆନ୍ କ୍ୟାଲେଣ୍ଡର
(ଗ) ଲୁନାର କ୍ୟାଲେଣ୍ଡର (ଘ) ଜେୱିସ୍ କ୍ୟାଲେଣ୍ଡର

46. ପ୍ରସିଦ୍ଧ ଜ୍ୟୋତିର୍ବିତ୍ ଆର୍ଯ୍ୟଭଟ୍ଟ ତାଙ୍କ ରଚିତ ପୁସ୍ତକ ଆର୍ଯ୍ୟଭଟ୍ଟୀୟ ପାଇଁ ପ୍ରସିଦ୍ଧ, ତାଙ୍କ ରଚିତ ଅନ୍ୟ ପୁସ୍ତକର ନାମ କ'ଣ ?
(କ) ସୂର୍ଯ୍ୟସିଦ୍ଧାନ୍ତ (ଖ) ଆର୍ଯ୍ୟସିଦ୍ଧାନ୍ତ
(ଗ) କରଣ କୌତୂହଳ (ଘ) ମହାସିଦ୍ଧାନ୍ତ

47. ଓଡ଼ିଶାର ଜଣେ ଜ୍ୟୋତିର୍ବିତ୍ 1099 ମସିହାରେ ପୁରୀଠାରେ 'ଭାସ୍ୱତୀ କରଣ' ପୁସ୍ତକ ରଚନା କରିଥିଲେ, ତାଙ୍କ ନାମ କ'ଣ ?
(କ) ଶତାନନ୍ଦ (ଖ) ମହାଦେବ (ଗ) ଦାମୋଦର (ଘ) ଚିତ୍ରଭାନୁ

48. ଫିରୋଜଶାହ ତୁଗଲକଙ୍କ ଦରବାରର ଜ୍ୟୋତିର୍ବିତ୍ ମହେନ୍ଦ୍ରସୁରି 1370 ମସିହାରେ ଆଷ୍ଟ୍ରୋଲାବ୍ ଉପରେ ଗୋଟିଏ ପୁସ୍ତକ ରଚନା କରିଥିଲେ । ଜ୍ୟୋତିର୍ବିଦୀୟ ପର୍ଯ୍ୟବେକ୍ଷଣ ପାଇଁ ଯନ୍ତ୍ରପାତି ଉପରେ ଏହା ହେଉଛି ପ୍ରଥମ ସଂସ୍କୃତ ଗ୍ରନ୍ଥ । ପୁସ୍ତକଟିର ନାମ କ'ଣ ?
(କ) ଯନ୍ତ୍ର ପ୍ରକାଶ (ଖ) ଯନ୍ତ୍ର ଚିନ୍ତାମଣି (ଗ) ଯନ୍ତ୍ରରାଜା (ଘ) ଯନ୍ତ୍ର ପ୍ରକାର

## ଉତ୍ତର

| | | | | | |
|---|---|---|---|---|---|
| 1 - ଖ | 2 - ଗ | 3 - ଘ | 4 - କ | 5 - ଘ | 6 - ଗ |
| 7 - କ | 8 - ଗ | 9 - କ | 10 - ଘ | 11 - କ | 12 - ଗ |
| 13 - ଘ | 14 - କ | 15 - ଖ | 16 - ଖ | 17 - ଘ | 18 - ଖ |
| 19 - ଗ | 20 - ଖ | 21 - ଖ | 22 - ଘ | 23 - ଖ | 24 - ଗ |
| 25 - ଖ | 26 - ଗ | 27 - ଖ | 28 - ଗ | 29 - ଖ | 30 - ଖ |
| 31 - ଘ | 32 - କ | 33 - ଗ | 34 - କ | 35 - ଘ | 36 - ଖ |

37 - କ 38 - ଗ 39 - ଗ (ସୂର୍ଯ୍ୟ, ପିତାମହ, ବଶିଷ୍ଠ, ପୌଲିଷ ଓ ରୋମାକ)

40 - ଘ 41 - ଖ (ପ୍ରାୟ ଖ୍ରୀ.ପୂ. 1400) 42 - ଗ 43 - ଗ 44 - କ

45 - ଖ 46 - ଖ 47 - କ 48 - ଗ

—

## ୬ । ଫଟୋ କ୍ୱିଜ୍

1. ଗ୍ରହ ଘୂର୍ଣ୍ଣନ ନିୟମ ଆବିଷ୍କାର କରିଥିବା ଏହି ଜ୍ୟୋତିର୍ବିତ୍ କିଏ ?
(କ) ଟାଇକୋ ବ୍ରାହେ
(ଖ) ଗାଲିଲିଓ
(ଗ) ଜୋହାନ୍‌ସ କେପଲର
(ଘ) ନିକୋଲାସ୍ କୋପରନିକସ୍



2. ଏଇଟି କେଉଁ ଗ୍ରହ ?
(କ) ବୃହସ୍ପତି
(ଖ) ଶନି
(ଗ) ୟୁରାନ୍‌ସ
(ଘ) ନେପଚ୍ୟୁନ୍



3. ଏକ ପ୍ରସିଦ୍ଧ ଧୂମକେତୁ ଏହି ଜ୍ୟୋତିର୍ବିତ୍‌ଙ୍କ ନାମରେ ଜଣା, ତାଙ୍କ ନାମ କ'ଣ ?
(କ) ଏଡ଼ମଣ୍ଡ୍ ହ୍ୟାଲେ
(ଖ) ଉଇଲିୟମ୍ ହରଶ୍ଚେଲ
(ଗ) ଟମାସ୍ ବପ୍
(ଘ) ୟୁଜି ହ୍ୟାକୁତାକେ



4. ବିଜ୍ଞାନକୁ ଜନପ୍ରିୟ କରିଥିବା ଯୋଗୁଁ କଳିଙ୍ଗ ପୁରସ୍କାର ପାଇଥିବା ଏହି ଭାରତୀୟ ଜ୍ୟୋତିର୍ବିତ୍ କିଏ ?
(କ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍
(ଖ) ଜୟନ୍ତ ବିଷ୍ଣୁ ନାର୍ଲିକର
(ଗ) ମେଘନାଦ ଶାହା
(ଘ) ଜଗଜିତ୍ ସିଂହ



5. ନୋବେଲ ପୁରସ୍କାରପ୍ରାପ୍ତ ଏହି ଭାରତୀୟ ଜ୍ୟୋତିର୍ବିତ୍‌ଙ୍କ ନାମ କ'ଣ ?
(କ) ଚନ୍ଦ୍ରଶେଖର ସୁବ୍ରମନ୍ୟମ୍
(ଖ) ସି.ଭି. ରମଣ
(ଗ) ଗୋବିନ୍ଦ ସ୍ୱରୂପ
(ଘ) ମେଘନାଦ ଶାହା



6. ଜଣେ ବିଖ୍ୟାତ ଜ୍ୟୋତିର୍ବିତ୍ ଏବଂ ଜନପ୍ରିୟ ବିଜ୍ଞାନ ଲେଖକ ଭାବେ ଖ୍ୟାତି ଅର୍ଜନ କରିଥିବା ଏହି ବୈଜ୍ଞାନିକ କିଏ ?
(କ) କାର୍ଲ ସାଗନ୍
(ଖ) ଷ୍ଟିଫେନ୍ ଉଇଲିୟମ୍ ହକିଙ୍
(ଗ) ଆର୍ଥର୍ ଏଡିଙ୍ଗଟନ୍
(ଘ) ଫ୍ରେଡ୍ ହୋଏଲ୍



7. ଏହି ଲୋକପ୍ରିୟ ବିଜ୍ଞାନ ଲେଖକ ତାଙ୍କ ପୁସ୍ତକରେ ପ୍ରଥମେ କୃତ୍ରିମ ଉପଗ୍ରହ ସାହାଯ୍ୟରେ ଯୋଗାଯୋଗ ବ୍ୟବସ୍ଥା ସମ୍ପର୍କରେ ଲେଖିଥିଲେ, ତାଙ୍କ ନାମ କ'ଣ ?
(କ) କାର୍ଲ ସାଗନ୍
(ଖ) ଏଚ୍.ଜି. ଓ୍ୱେଲ୍‌ସ
(ଗ) ଲିଓନ୍ ଲିଡ଼ରମ୍ୟାନ୍
(ଘ) ଆର୍ଥର୍ କ୍ଲାର୍କ



8. ଜୟପୁରର ମହାରାଜା ଜୟସିଂହ ନିର୍ମାଣ କରିଥିବା ଏହି ପର୍ଯ୍ୟବେକ୍ଷଣାଗାର କେଉଁଠି ଅବସ୍ଥିତ ?
(କ) ଦିଲ୍ଲୀ
(ଖ) ଜୟପୁର
(ଗ) ବାରାଣସୀ
(ଘ) ଉଜ୍ଜୟିନୀ



9. ଏହି ସିଦ୍ଧାନ୍ତ ଜ୍ୟୋତିର୍ବିତ୍ ଜଣକ କିଏ ?
(କ) ଭାସ୍କରାଚାର୍ଯ୍ୟ
(ଖ) ସାମନ୍ତ ଚନ୍ଦ୍ରଶେଖର
(ଗ) ବରାହମିହିର
(ଘ) ଆର୍ଯ୍ୟଭଟ୍ଟ



10. 'ଆଧୁନିକ ବିଜ୍ଞାନର ଜନକ' ଆଖ୍ୟା ଅର୍ଜନ କରିଥିବା ଏହି ଜ୍ୟୋତିର୍ବିତ୍ କିଏ ? ବିଜ୍ଞାନ ପାଇଁ ତାଙ୍କୁ ଶେଷ ଜୀବନ କାରାବାସରେ କଟାଇବାକୁ ପଡ଼ିଥିଲା ।
(କ) ଆଇଜାକ୍ ନିଉଟନ୍
(ଖ) ଗାଲିଲିଓ
(ଗ) ନିକୋଲାସ୍ କୋପରନିକସ
(ଘ) ଟାଇକୋ ବ୍ରାହେ



11. ଏହି ପ୍ରସିଦ୍ଧ ବୈଜ୍ଞାନିକ ଓ ଜ୍ୟୋତିର୍ବିତ୍‌ଙ୍କ ନାମ କ'ଣ ? ସେ ମଧ୍ୟ ହେଉଛନ୍ତି କାଲକୁଲସ୍‌ର ଉଦ୍ଭାବକ—
(କ) ଏଡ଼ମଣ୍ଡ ହାଲେ
(ଖ) ଆଇଜାକ୍ ନିଉଟନ୍
(ଗ) ଆଲବର୍ଟ ଆଇନଷ୍ଟାଇନ
(ଘ) ଲିବନିଜ୍



12. ଭାରତର ଏହି କୃତ୍ରିମ ଉପଗ୍ରହର ନାମ କ'ଣ ?
(କ) ଆର୍ଯ୍ୟଭଟ୍ଟ
(ଖ) ରୋହିଣୀ
(ଗ) ଓସୋନ୍‌ସାଟ୍
(ଘ) ଇନ୍‌ସାଟ୍





13. ଭାରତର ଏହି ରେଡ଼ିଓ ଜ୍ୟୋତିର୍ବିତ୍ କିଏ ? ସେ ଭାରତରେ ଗୋଟିଏ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର ସ୍ଥାପନ କରିଛନ୍ତି –
(କ) ଭି. ବାଳସୁବ୍ରମନ୍ୟମ୍
(ଖ) ଭି.ଆର୍.ବେଣୁଗୋପାଳ
(ଗ) ଜୟନ୍ତ ବିଷ୍ଣୁ ନାର୍ଲିକର
(ଘ) ଗୋବିନ୍ଦ ସ୍ୱରୂପ



14. ଏହି ଭାରତୀୟ ମହାକାଶଚାରୀଙ୍କ ନାମ କ'ଣ ?
(କ) ରବି ନାରାୟଣ ଶର୍ମା
(ଖ) ରାକେଶ ଶର୍ମା
(ଗ) ଅଭିନବ ବିନ୍ଦ୍ରା
(ଘ) ମାଧବନ୍ ନାୟାର



15. ଏହି ପ୍ଲାନେଟାରିୟମ୍‌ର ନାମ କ'ଣ ?
(କ) ଜବାହରଲାଲ ନେହୁରୁ ପ୍ଲାନେଟାରିୟମ୍
(ଖ) ପଠାଣିସାମନ୍ତ ପ୍ଲାନେଟାରିୟମ୍
(ଗ) ବିର୍ଲା ପ୍ଲାନେଟାରିୟମ୍
(ଘ) ମହାତ୍ମାଗାନ୍ଧୀ ପ୍ଲାନେଟାରିୟମ୍



16. ଏହା ହେଉଛି ଗୋଟିଏ ଗାଲାକ୍‌ସିର ଚିତ୍ର, ଏହାର ନାମ କ'ଣ ?
(କ) ଆଣ୍ଡ୍ରୋମେଡ଼ା
(ଖ) ଆକାଶଗଙ୍ଗା
(ଗ) କ୍ରେବ୍ ନୀହାରିକା
(ଘ) ମାଗେଲାନୀୟ ବାଦଲ



17. ଏହା ହେଉଛି ପ୍ରାଚୀନ ଭାରତର ଜଣେ ଶ୍ରେଷ୍ଠ ଜ୍ୟୋତିର୍ବିତ୍ ତଥା ଗଣିତଜ୍ଞଙ୍କର ମୂର୍ତ୍ତିର ଚିତ୍ର, ମୂର୍ତ୍ତିଟି ପୁନେରେ ଥିବା ଆନ୍ତଃବିଶ୍ୱବିଦ୍ୟାଳୟ ଜ୍ୟୋତିର୍ବିଜ୍ଞାନ କେନ୍ଦ୍ରଠାରେ ସ୍ଥାପିତ ହୋଇଛି, ତାଙ୍କ ନାମ କ'ଣ ?
(କ) ଆର୍ଯ୍ୟଭଟ୍ଟ
(ଖ) ବ୍ରହ୍ମଗୁପ୍ତ
(ଗ) ବରାହମିହିର
(ଘ) ଭାସ୍କରାଚାର୍ଯ୍ୟ



18. ଏହା ହେଉଛି ପ୍ରାଚୀନ ଗ୍ରୀସ୍‌ର ଜଣେ ବିଶିଷ୍ଟ ଦାର୍ଶନିକ ତଥା ବୈଜ୍ଞାନିକଙ୍କ ଚିତ୍ର, ତାଙ୍କର ଭୂକେନ୍ଦ୍ରିକ ମତବାଦ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ ଥିଲା, ତାଙ୍କ ନାମ କ'ଣ ?
(କ) ସକ୍ରେଟିସ୍ (ଖ) ପ୍ଲାଟୋ
(ଗ) ଆରିଷ୍ଟୋଟଲ୍ (ଘ) ଟଲେମି



19. ଭାରତର ଏହା ହେଉଛି ଏକମାତ୍ର ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର, ଏହାର ନାମ କ'ଣ ?
(କ) ଜି.ଏମ୍.ଆର୍.ଟି.
(ଖ) ଇନ୍ଦିରା
(ଗ) ବିଶ୍ୱବିଦ୍ୟାଳୟ ଦୂରବୀକ୍ଷଣ
(ଘ) ଜାତୀୟ ରେଡ଼ିଓ ଦୂରବୀକ୍ଷଣ



20. ଏହି ବୈଜ୍ଞାନିକଙ୍କ ତତ୍ତ୍ୱ ନିଉଟନ୍‌ଙ୍କ ମହାକର୍ଷଣ ତତ୍ତ୍ୱକୁ ଭୁଲ ପ୍ରମାଣ କରିଥିଲା, ତାଙ୍କ ନାମ କ'ଣ ?
(କ) ଷ୍ଟିଫେନ୍ ହକିଙ୍ଗ୍
(ଖ) ଆଇନଷ୍ଟାଇନ୍
(ଗ) ଫ୍ରେଡ୍ ହୋଏଲ୍
(ଘ) ଏଡ଼ୱଇନ୍ ହବଲ୍



21. ଭାରତରେ ଜନ୍ମ ଏବଂ ଇଞ୍ଜିନିୟରିଙ୍ଗ୍ ଶିକ୍ଷା ଲାଭ କରିଥିବା ତଥା ଆମେରିକାର ନାଗରିକତ୍ୱ ଲାଭ କରି ମହାକାଶରେ ମୃତ୍ୟୁବରଣ କରିଥିବା ମହାକାଶଚାରିଣୀ କିଏ ?
(କ) ସୁନିତା ଉଇଲିୟମ୍ସ
(ଖ) କଳ୍ପନା ଚାୱ୍ଲା
(ଗ) ଜୁହି ଚାୱ୍ଲା
(ଘ) ସୁନିତା ଟଣ୍ଡନ୍



22. ଏହି ଇଂରେଜ ଜ୍ୟୋତିର୍ବିତ୍ କିଏ ? ସେ ବିଶ୍ୱସୃଷ୍ଟିର 'ସ୍ଥିତାବସ୍ଥା ତତ୍ତ୍ୱ' ପ୍ରକାଶ କରିଥିଲେ–
(କ) ଆର୍ଥର୍ ଏଡିଙ୍ଗଟନ୍
(ଖ) ଜନ୍ ଆଦାମ୍ସ
(ଗ) ରୋଗର୍ ପେନରୋଜ୍
(ଘ) ଫ୍ରେଡ୍ ହୋଏଲ୍



23. ସୋଭିଏଟ୍ ରୁଷ୍‌ର ଏହି ମହାକାଶଚାରୀ କିଏ ?
(କ) ୟୁରି ଗାଗାରିନ୍
(ଖ) ଭିକ୍ଟର ଗୋର୍ବାଟ୍‌କୋ
(ଗ) କୋରିସ୍ ୟୋଗୋରୋଭ
(ଘ) ସେର୍ଗେଇ ରେଭିନ୍



24. ଭାରତୀୟ ବଂଶୋଦ୍ଭବ ଏହି ମହିଳା ମହାକାଶଚାରୀ କିଏ ? ମହାକାଶରେ ସର୍ବାଧିକ ସମୟ ରହିଥିବା ମହିଳାଭାବେ ସେ ରେକର୍ଡ ସ୍ଥାପନ କରିଛନ୍ତି–
(କ) କଳ୍ପନା ଚାୱ୍ଲା
(ଖ) ସୁନିତା ଉଇଲିୟମ୍ସ
(ଗ) ଅନୋସେହ ଆନସାରି
(ଘ) ସୁସାନ୍ ହେଲ୍‌ମସ୍



25. ସୌରଜଗତର ଗୋଟିଏ ଗ୍ରହ ଆବିଷ୍କାର କରିଥିବା ଏହି ଜ୍ୟୋତିର୍ବିତ୍ କିଏ ?
(କ) ଉଇଲିୟମ୍ ଟମ୍‌ବୋ
(ଖ) ଜନ୍ ଆଡ଼ାମସ୍
(ଗ) ଉଇଲିୟମ୍ ଫାଉଲର୍
(ଘ) ଉଇଲିୟମ୍ ହରଶେଲ୍



26. ଭାରତୀୟ ମହାକାଶ ଗବେଷଣା ସଂସ୍ଥା 'ଇସ୍ରୋ'ର ଅଧ୍ୟକ୍ଷ ତଥା ଜଣେ ଶ୍ରେଷ୍ଠ ଜ୍ୟୋତିର୍ବିତ୍‌ଭାବେ ଖ୍ୟାତି ଲାଭ କରିଥିବା ଏହି ବ୍ୟକ୍ତି କିଏ ? ଚନ୍ଦ୍ରକୁ ପଠାଯାଇଥିବା ଭାରତୀୟ ଯାନ ପଛରେ ଏହାଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ–
(କ) ଜି.ମାଧବନ୍ ନାୟାର
(ଖ) କେ. କସ୍ତୁରିରଙ୍ଗନ୍
(ଗ) କେ.ଆର୍. ଶ୍ରୀଧରମୂର୍ତ୍ତି
(ଘ) ଏସ୍.କେ. ଜୈନ



27. 'ସୌରକେନ୍ଦ୍ରିକ ମତବାଦ' ଆବିଷ୍କାର କରି ଜ୍ୟୋତିର୍ବିଜ୍ଞାନରେ ଆଲୋଡ଼ନ ସୃଷ୍ଟି କରିଥିବା ପୋଲାଣ୍ଡର ଏହି ଜ୍ୟୋତିର୍ବିତ୍‌ଙ୍କ ନାମ କ'ଣ ?
(କ) ଜିଓର୍ଡ଼ାନୋ ବ୍ରୁନୋ (ଖ) ଜୋହାନ୍‌ସ କେପଲର
(ଗ) ଜୋହାନ୍ ବୋଡ଼େ (ଘ) ନିକୋଲାସ୍ କୋପରନିକ୍‌ସ



28. "ନକ୍ଷତ୍ରରେ ଉଚ୍ଚ ତାପମାତ୍ରାରେ ଆୟନୀକରଣ" ତତ୍ତ୍ୱପାଇଁ ପ୍ରସିଦ୍ଧ ଏହି ଭାରତୀୟ ବୈଜ୍ଞାନିକ କିଏ ? ସେ କଲିକତାରେ 'ଭାରତୀୟ ଆଣବିକ ପଦାର୍ଥ ବିଜ୍ଞାନ ସଂସ୍ଥା' ସ୍ଥାପନ କରିଥିଲେ, ତାଙ୍କ ମୃତ୍ୟୁ ପରେ ଏହି ସଂସ୍ଥା ତାଙ୍କ ନାମରେ ନାମିତ ହୋଇଛି–
(କ) ହୋମି ଜାହାଙ୍ଗିର ଭାବା (ଖ) ମେଘନାଦ ଶାହା
(ଗ) ବିକ୍ରମ ସରାଭାଇ (ଘ) ସତ୍ୟେନ୍ଦ୍ରନାଥ ବୋଷ୍

29. ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା ଏହି ଭାରତୀୟ ଜ୍ୟୋତିର୍ବିତ୍‌ଙ୍କ ନାମ କ'ଣ ? ତାଙ୍କ ନାମରେ ଭାରତରେ ଗୋଟିଏ ପର୍ଯ୍ୟବେକ୍ଷଣାଗର ସ୍ଥାପିତ ହୋଇଛି, ସେ ଗୋଟିଏ ଧୂମକେତୁକୁ ଆବିଷ୍କାର କରିଛନ୍ତି–



(କ) ଏମ୍.କେ. ଭାଇନୁ ବାପୁ
(ଖ) ଗୋବିନ୍ଦ ସ୍ୱରୂପ
(ଗ) ଚନ୍ଦ୍ରଶେଖର ଭେଙ୍କଟରମଣ
(ଘ) ସୁବ୍ରମନିଅମ୍ ଚନ୍ଦ୍ରଶେଖର

30. ଏହି ଭାରତୀୟ ଜ୍ୟୋତିର୍ବିତ୍‌ଙ୍କ ନାମ କ'ଣ ? ସେ ଭାରତୀୟ ମହାକାଶ ଗବେଷଣା ସଂସ୍ଥା 'ଇସ୍ରୋ'ର ସ୍ଥାପନରେ ମୁଖ୍ୟ ଭୂମିକା ନେଇଥିଲେ –



(କ) ମେଘନାଦ ଶାହା
(ଖ) ବିକ୍ରମ ସରାଭାଇ
(ଗ) ଶାନ୍ତିସ୍ୱରୂପ ଭଟ୍ଟନାଗର
(ଘ) ଜି.ଏନ୍. ରାମଚନ୍ଦ୍ରନ୍

## ଉତ୍ତର

| | | | | | |
|---|---|---|---|---|---|
| 1 - ଗ | 2 - ଖ | 3 - କ | 4 - ଖ | 5 - କ | 6 - ଖ |
| 7 - ଘ | 8 - କ | 9 - ଖ | 10 - ଖ | 11 - ଖ | 12 - କ |
| 13 - ଘ | 14 - ଖ | 15 - ଖ | 16 - କ | 17 - କ | 18 - ଗ |
| 19 - କ | 20 - ଖ | 21 - ଖ | 22 - ଘ | 23 - କ | 24 - ଖ |
| 25 - ଘ | 26 - କ | 27 - ଘ | 28 - ଖ | 29 - କ | 30 - ଖ |

—

# ୭ । ଆଧୁନିକ ଭାରତୀୟ ଜ୍ୟୋତିର୍ବିଜ୍ଞାନ

1. ଆମ ଦେଶର କେଉଁଠାରେ ବୃହତ୍ତମ ସୌର ଦୂରବୀକ୍ଷଣ ଯନ୍ତ୍ର ଅଛି ?
(କ) ଉଦୟପୁର (ଖ) କୋଦାଇ କେନାଲ (ଖ) ଲେହ (ଘ) ଚେନାଇ
2. ଆମ ଦେଶର କେଉଁଠାରେ ଗାମାରଶ୍ମି ଦୂରବୀକ୍ଷଣ ଯନ୍ତ୍ର ଅଛି ?
(ଖ) ଲେହ (ଖ) କୋଦାଇ କେନାଲ (ଗ) ଗୁଲମାର୍ଗ (ଘ) କାନପୁର
3. ଉଲ୍‌କାପିଣ୍ଡଦ୍ୱାରା ସୃଷ୍ଟି ହୋଇଥିବା ଲୋନାର ଗର୍ତ୍ତ କେଉଁ ପ୍ରଦେଶରେ ଅବସ୍ଥିତ ?
(କ) ମହାରାଷ୍ଟ୍ର (ଖ) କେରଳ (ଗ) ଓଡ଼ିଶା (ଘ) ପଞ୍ଜାବ
4. ଆମ ଦେଶର କେଉଁଠାରେ ଗୁରୁଶିଖର ଅବଲୋହିତ (infrared) ପର୍ଯ୍ୟବେକ୍ଷଣାଗାର ଅବସ୍ଥିତ ?
(କ) ନୈନିତାଲ (ଖ) ଡେରାଡୁନ୍
(ଗ) ମାଉଣ୍ଟ ଆବୁ (ଘ) ଉତ୍‌କାମଣ୍ଡ
5. ଗ୍ରହାଣୁ ସଂଖ୍ୟା 2596 ଜଣେ ଭାରତୀୟ ଜ୍ୟୋତିର୍ବିତ୍‌ଙ୍କ ନାମରେ ନାମିତ କରାଯାଇଛି, ସେ କିଏ ?
(କ) ମେଘନାଦ ଶାହା (ଖ) ଗୋବିନ୍ଦ ସ୍ୱରୂପ
(ଗ) ଭୈନୁ ବାପୁ (ଘ) ଜେ.ବି.ନାର୍ଲିକର
6. ଆମ ଦେଶର ପ୍ରଥମ ପ୍ଲାନେଟାରିୟମ୍ କେଉଁଠାରେ ସ୍ଥାପିତ ହୋଇଛି ?
(କ) କୋଲକାତା (ଖ) ଦିଲ୍ଲୀ (ଗ) ମୁମ୍ବାଇ (ଘ) ପୁନେ
7. ଆମ ଦେଶର କେଉଁ ସହର ନିକଟରେ ଜିଆଣ୍ଟ ମିଟରୱେଭ୍ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର ସ୍ଥାପିତ ହୋଇଛି ?
(କ) ହରିଦ୍ୱାର (ଖ) ପୁନେ (ଗ) ଗୌହାଟି (ଘ) ହାଇଦ୍ରାବାଦ
8. ଦେଶର କେଉଁଠାରେ ଡେକାମିଟର ୱେଭ୍ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର ସ୍ଥାପିତ ହୋଇଛି ?
(କ) ଲାଦାଖ (ଖ) ମସୌରି (ଗ) ଶିଲଙ୍ଗ୍ (ଘ) ଗୌରିବିଦ୍ନାନୁର
9. କେଉଁ ଭାରତୀୟ ଜ୍ୟୋତିର୍ବିତ୍ ମହାଜାଗତିକ ରଶ୍ମି ଉପରେ ଉଲ୍ଲେଖନୀୟ ଅଧ୍ୟୟନ କରିଛନ୍ତି ?
(କ) ମେଘନାଦ ଶାହା (ଖ) ହୋମି ଜାହାଙ୍ଗିର ଭାବା
(ଗ) ଗୋବିନ୍ଦ ସ୍ୱରୂପ (ଘ) କେ.ଡି.ଅଭୟଙ୍କର

10. ବାହ୍ୟଜଗତରେ ଜୀବସତ୍ତାର ସଙ୍କେତ ପାଇଁ ଭାରତର କେଉଁ ଦୂରବୀକ୍ଷଣ ଯନ୍ତ୍ର ଅଂଶ ଗ୍ରହଣ କରିଛି ?
(କ) ଉଟି ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର
(ଖ) ଜିଆଣ୍ଟ୍ ମିଟର ୱେଭ୍ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର
(ଗ) ଡେକାମିଟର ୱେଭ୍ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର
(ଘ) କୌଣସିଟି ନୁହେଁ

11. ଗୋଟିଏ ଗ୍ରହାଣୁ ଆବିଷ୍କାର କରିବାରେ ପ୍ରଥମ ଭାରତୀୟ ଜ୍ୟୋତିର୍ବିତ୍ କିଏ ?
(କ) ଆର୍. ରାଜାମୋହନ (ଖ) ଭୈନୁ ବାପୁ
(ଗ) ଏନ୍.ସି.ରାଣା (ଘ) ଡି.ଏସ୍.କୋଠାରି

12. ଭାରତର ପ୍ରଥମ ରେଡ଼ିଓ ଦୂରବୀକ୍ଷଣ ଯନ୍ତ୍ର କେଉଁଠାରେ ସ୍ଥାପିତ ହୋଇଛି ?
(କ) ଡେରାଡୁନ (ଖ) ଉଟି (ଗ) କଲ୍ୟାଣ (ଘ) ପୁନେ

13. ପାଶ୍ଚାତ୍ୟ ଜ୍ୟୋତିର୍ବିତ୍‌ଙ୍କ ପୂର୍ବରୁ କେଉଁ ଭାରତୀୟ 1911 ମସିହାରେ ପ୍ଲୁଟୋର ପୂର୍ବାନୁମାନ କରିଥିଲେ ?
(କ) ଏଚ୍.ପି.ଭଟ୍ଟ (ଖ) ଏ.କେ.ଦାସ
(ଗ) ଭି.ବି.କେଟ୍‌କାର (ଘ) ଏ.ଏଲ୍. ନାରାୟଣ

14. ଭାରତ କେଉଁ ମହାକାଶ ପିଣ୍ଡ ପାଖକୁ ମହାକାଶଯାନ ପଠାଇଛି ?
(କ) ଚନ୍ଦ୍ର (ଖ) ମଙ୍ଗଳ (ଗ) ସେରସ୍ (ଘ) କୌଣସିଟି ନୁହେଁ

15. 'ଭାରତୀୟ ଜ୍ୟୋତିର୍ବିଦୀୟ ସୋସାଇଟି' କେଉଁଠାରେ ସ୍ଥାପିତ ହୋଇଛି ?
(କ) ବାଙ୍ଗାଲୋର (ଖ) ପୁନେ (ଗ) ମୁମ୍ବାଇ (ଘ) ହାଇଦ୍ରାବାଦ

16. ଓଡ଼ିଶାର କେଉଁଠାରେ ପ୍ଲାନେଟାରିୟମ୍ ପ୍ରତିଷ୍ଠା କରାଯାଇଛି ?
(କ) କଟକ (ଖ) ଭୁବନେଶ୍ୱର (ଗ) ରାଉରକେଲା (ଘ) ପୁରୀ

17. ଭାରତୀୟ ମହାକାଶ କାର୍ଯ୍ୟକ୍ରମର ଜନକ କାହାକୁ କୁହାଯାଏ ?
(କ) ବିକ୍ରମ ସାରାଭାଇ (ଖ) ହୋମି ଜାହାଙ୍ଗିର ଭାବା
(ଗ) ମେଘନାଦ ଶାହା (ଘ) ଅବଦୁଲ କାଲାମ

## ଉତ୍ତର

1 - ଖ 2 - ଗ 3 - କ 4 - ଗ 5 - ଗ 6 - ଘ
7 - ଖ (ନାରାୟଣଗାଁଓ ଠାରେ) 8 - ଘ 9 - ଖ 10 - ଖ
11 - କ 12 - ଗ (ମୁମ୍ବାଇ ନିକଟରେ) 13 - ଗ 14 - କ 15 - ଘ
16 - ଖ 17 - କ

# ୮ । ଅନ୍ୟାନ୍ୟ

1. ପୃଥିବୀରେ ଜ୍ୟୋତିର୍ବିଜ୍ଞାନକୁ ନିୟନ୍ତ୍ରଣ କରୁଥିବା ଆନ୍ତର୍ଜାତୀୟ ଜ୍ୟୋତିର୍ବିଦୀୟ ସଂଘ କେବେ ପ୍ରତିଷ୍ଠା ହୋଇଛି ?
   (କ) 1957 (ଖ) 1919 (ଗ) 1969 (ଘ) 1940
2. ଗାଲିଲିଓ କେବେ ବୃହସ୍ପତିର ଚାରୋଟି ଉପଗ୍ରହକୁ ଆବିଷ୍କାର କରିଥିଲେ ?
   (କ) 1610 (ଖ) 1643 (ଗ) 1630 (ଘ) 1635
3. ୟୁରାନ୍ସ କେବେ ଆବିଷ୍କୃତ ହେଲା ?
   (କ) 1781 (ଖ) 1792 (ଗ) 1805 (ଘ) 1930
4. ପ୍ଲୁଟୋ କେବେ ଆବିଷ୍କୃତ ହେଲା ?
   (କ) 1920 (ଖ) 1930 (ଗ) 1940 (ଘ) 1950
5. ଇଂଲଣ୍ଡର ପ୍ରସିଦ୍ଧ ରୟାଲ୍ ଗ୍ରୀନ୍‌ଉଇଚ୍ ମାନମନ୍ଦିର କେବେ ସ୍ଥାପିତ ହୋଇଛି ?
   (କ) 1665 (ଖ) 1675 (ଗ) 1685 (ଘ) 1705
6. ପ୍ରଥମ କୁଇପରବଳୟ ବସ୍ତୁପିଣ୍ଡ କେବେ ଆବିଷ୍କୃତ ହେଲା ?
   (କ) 1972 (ଖ) 1982 (ଗ) 1992 (ଘ) 2002
7. ରୁଷିଆ ତୁଙ୍ଗୁସ୍କାଠାରେ କେବେ ଗୋଟିଏ ରହସ୍ୟମୟ ମହାକାଶ ପିଣ୍ଡ ପଡ଼ିଥିଲା ?
   (କ) 1897 (ଖ) 1908 (ଗ) 1910 (ଘ) 1919
8. ସୌରଜଗତ ବାହାରେ ପ୍ରଥମ ଗ୍ରହ କେବେ ଆବିଷ୍କୃତ ହେଲା ?
   (କ) 1991 (ଖ) 1995 (ଗ) 2001 (ଘ) 2003
9. କେଉଁ ପ୍ରସିଦ୍ଧ କବି ଜ୍ୟୋତିର୍ବିଦ୍ୟା ଉପରେ ଗୋଟିଏ ପୁସ୍ତକ ରଚନା କରିଛନ୍ତି ?
   (କ) ଲର୍ଡ୍ ଟେନିସନ୍ (ଖ) ଜିଓଫ୍ରେ ଚଉସର
   (ଗ) ଲର୍ଡ୍ ବାଇରନ୍ (ଘ) ଉଇଲିୟମ୍ ୱାର୍ଡ୍‌ସୱାର୍ଥ

10. କେଉଁ ଜ୍ୟୋତିର୍ବିତ୍‌ଙ୍କୁ ରୁଷ ସାହିତ୍ୟର ପ୍ରତିଷ୍ଠାତା ଭାବେ ମଧ୍ୟ ସମ୍ମାନ ଦିଆଯାଏ ?

(କ) ମିଖାଇଲ୍ ଲୋମୋନୋସୋଭ୍

(ଖ) ଆରିଷ୍ଟାର୍କ ବେଲୋପୋଲ୍‌ସ୍କି

(ଗ) ଲିଓ ଟଲଷ୍ଟୟ

(ଘ) ଭି. ଶୋଲୋମିଟ୍‌ସ୍କି

11. 'ପ୍ରାକୃତିକ ଇତିହାସ' (Natural History) ନାମରେ ଏକ ପୁସ୍ତକ କିଏ ଲେଖିଛନ୍ତି ? ଏଥିରେ ରୀତିସିଦ୍ଧ ଜ୍ୟୋତିବିଦ୍ୟାର ସମସ୍ତ ତତ୍ତ୍ୱ ରହିଛି –

(କ) ପ୍ଲିନି (ଖ) ଥେଲ୍‌ସ (ଗ) ଆରିଷ୍ଟୋଟଲ (ଘ) ଆରିଷ୍ଟାରସ୍

12. କେଉଁ ଦାର୍ଶନିକ ମତ ଦେଇଥିଲେ ଯେ "ବିଶ୍ୱର କେନ୍ଦ୍ର କିମ୍ବା ପରିଧି ନାହିଁ "–

(କ) ଆରିଷ୍ଟୋଟଲ (ଖ) କନଫୁସିୟସ୍

(ଗ) ଜିଓର୍ଡ଼ାନୋ ବ୍ରୁନୋ (ଘ) ଓମାର ଖୟାମ୍

13. କେଉଁ ଧୂମକେତୁ ଖୋଜାଳି କହିଥିଲେ ଯେ "ଶୋଇରହି ଜଣେ ଧୂମକେତୁକୁ ଆବିଷ୍କାର କରିପାରିବ ନାହିଁ" –

(କ) ଚାର୍ଲସ୍ ମେସିୟର (ଖ) ଉଇଲିୟମ୍ ଭନ୍ ବିଲା

(ଗ) ଏଡ଼ମଣ୍ଡ ହ୍ୟାଲେ (ଘ) ଲେୱିସ୍ ସୁଇଫ୍ଟ

14. କେଉଁ ସ୍ୱର୍ଗୀୟ ବସ୍ତୁକୁ ପୃଥିବୀରେ ପ୍ଲେଗ୍, ଭୂକମ୍ପ, ଅସ୍ଥିରତା ଆଦିର କାରଣ ଭାବେ ବିଶ୍ୱାସ କରାଯାଉଥିଲା ?

(କ) ଧୂମକେତୁ (ଖ) ଉଲ୍‌କା (ଗ) ଶନି (ଘ) ସୁପରନୋଭା

15. ପ୍ରାଚୀନ କାଳରେ କେଉଁ ଦେଶରେ ବିଶ୍ୱାସ କରାଯାଉଥିଲା ଯେ ଗୋଟିଏ ଅସୁର (Dragon) ହେଉଛି ସୂର୍ଯ୍ୟୋପରାଗର କାରଣ । ଏଥିରୁ ସୂର୍ଯ୍ୟକୁ ରକ୍ଷା କରିବା ପାଇଁ ଲୋକମାନେ ଢୋଲ ବଜାଉଥିଲେ ଓ ବଡ଼ ପାଟିରେ ଚିତ୍କାର କରୁଥିଲେ –

(କ) ଭାରତ (ଖ) ଚୀନ (ଗ) ବ୍ରାଜିଲ (ଘ) ମିଶର

16. କେଉଁ ଗ୍ରହକୁ ଖରାପ ଦଶା ପଡ଼ିବାର କାରଣ କୁହାଯାଏ ?

(କ) ମଙ୍ଗଳ (ଖ) ଶୁକ୍ର (ଗ) ଶନି (ଘ) ବୁଧ

17. କେଉଁ ଧାର୍ମିକ ପୀଠରେ ଗୋଟିଏ ଉଲ୍‌କାପିଣ୍ଡକୁ ପୂଜା କରାଯାଏ ?
(କ) ଜେରୁଜେଲମ୍ (ଖ) ମକ୍କା (ଗ) ବାରାଣସୀ (ଘ) ମଦିନା
18. ଶୁକ୍ର ଗ୍ରହର ଉପଗ୍ରହକୁ କିଏ ଆବିଷ୍କାର କରିଥିଲେ ?
(କ) ଉଇଲିୟମ୍ ହରଶେଲ୍ (ଖ) ଜିଓଭାନି କାସିନି
(ଗ) ଆସାଫ୍ ହଲ୍ (ଘ) ଗାଲିଲିଓ ଗାଲିଲି
19. ପୃଥିବୀ ବାହାରେ ଅନ୍ୟ କେଉଁଠାରେ ଜୀବଜଗତର ସନ୍ଧାନରେ ଜ୍ୟୋତିର୍ବିତ୍‌ମାନେ ଚେଷ୍ଟା ଚଳାଇଛନ୍ତି ?
(କ) ଇଉରୋପା (ଖ) ଟିଟାନ୍ (ଗ) ମିରାଣ୍ଡା (ଘ) ଫୋବୋସ୍
20. ରେଡ଼ିଓ ତରଙ୍ଗ ଦ୍ୱାରା ପୃଥିବୀ ବାହାରର ବୃଦ୍ଧିମାନ ଜୀବଣୁସତ୍ତାର ସନ୍ଧାନ ନେବା ପାଇଁ କିଏ ପ୍ରଥମେ ଧାରଣା ଦେଲେ ?
(କ) କାର୍ଲ ସାଗନ୍ (ଖ) ଆର୍ଥର ସି. କ୍ଲାର୍କ
(ଗ) ଫ୍ରାଙ୍କ୍ ଡ୍ରେକ୍ (ଘ) ଫିଲିପ୍ ମୋରିସନ୍
21. ମଙ୍ଗଳ ଗ୍ରହରେ ଉନ୍ନତ ସଭ୍ୟତା ରହିଛି ବୋଲି ପ୍ରଥମେ କିଏ ନିଜ ପର୍ଯ୍ୟବେକ୍ଷଣ ଫଳାଫଳରୁ ପ୍ରକାଶ କରିଥିଲେ ?
(କ) ପର୍ସିଭାଲ୍ ଲୋୱେଲ୍ (ଖ) କାର୍ଲ ସାଗନ୍
(ଗ) ଫ୍ରାଙ୍କ୍ ଡ୍ରେକ୍ (ଘ) ଫ୍ରେଡ୍ ହୋଏଲ
22. ପୃଥିବୀ ବାହାରେ ଉନ୍ନତ ଜୀବଜଗତର ସମ୍ଭାବନା ଥିବା ଦର୍ଶାଇ ଏକ ସମୀକରଣକୁ କିଏ ଉପସ୍ଥାପନ କରିଥିଲେ ?
(କ) କାର୍ଲ ସାଗନ୍ (ଖ) ଫ୍ରିମାନ୍ ଡାଇସନ୍
(ଗ) ଗୋବିନ୍ଦ ସ୍ୱରୂପ (ଘ) ଫ୍ରାଙ୍କ୍ ଡ୍ରେକ୍
23. 'ସମୟର ଏକ ସଂକ୍ଷିପ୍ତ ଇତିହାସ' (A Brief History of Time) ପୁସ୍ତକଟି କିଏ ରଚନା କରିଛନ୍ତି ? ଏଥିରେ କୃଷ୍ଣଗର୍ତ୍ତ ଓ ପୃଥିବୀର ସୃଷ୍ଟି ସମ୍ବନ୍ଧରେ ବିଶଦ ବିବରଣୀ ଦିଆଯାଇଛି—
(କ) କାର୍ଲ ସାଗନ୍ (ଖ) ଜୟନ୍ତ ବିଷ୍ଣୁ ନାର୍ଲିକର
(ଗ) ଷ୍ଟିଫେନ୍ ଉଇଲିୟମ୍ ହକିଙ୍ଗ୍ (ଘ) ପାଟ୍ରିକ୍ ମୁରେ
24. 'ଭାରତରେ ଜ୍ୟୋତିର୍ବିଦ୍ୟା' (Astronomy in India) ପୁସ୍ତକର ରଚୟିତା କିଏ ?
(କ) ଜୟନ୍ତ ବିଷ୍ଣୁ ନାର୍ଲିକର (ଖ) ରାଜେଶ କୋଚାର
(ଗ) ସୁବ୍ରମନ୍ୟମ୍ ଚନ୍ଦ୍ରଶେଖର (ଘ) ବିମାନ ବସୁ

25. 'ସଂକ୍ଷିପ୍ତରେ ବ୍ରହ୍ମାଣ୍ଡ' (The Universe in a Nutshell) ଲୋକପ୍ରିୟ ପୁସ୍ତକର ରଚୟିତା କିଏ ?
(କ) ଷ୍ଟିଫେନ୍ ଉଇଲିୟମ୍ ହକିଙ୍ଗ୍ (ଖ) କାର୍ଲ ସାଗନ୍
(ଗ) ରୋଗର ପେନ୍‌ରୋଜ୍ (ଘ) ପାଟ୍ରିକ୍ ମୁରେ
26. ପ୍ରଥମ ନକ୍ଷତ୍ର ମାନଚିତ୍ର କିଏ ପ୍ରସ୍ତୁତ କରିଥିଲେ ?
(କ) ଟାଇକୋ ବ୍ରାହେ (ଖ) ଟଲେମି
(ଗ) ହିପାରକସ୍ (ଘ) ଆଲେସାଣ୍ଡ୍ରୋ ପିକୋଲୋମିନି
27. ଲାର୍ଜ ମାଗେଲାନିକ୍ କ୍ଲାଉଡ୍‌ରେ କିଏ 1987 A ସୁପରନୋଭାକୁ ଆବିଷ୍କାର କରିଥିଲେ ?
(କ) ଆୟାନ୍ ଶେଲଟନ୍ (ଖ) ଆଲବର୍ଟ ଜୋନ୍‌ସ
(ଗ) ରୋବ୍ ମାକନଟ୍ (ଘ) କେହି ନୁହେଁ
28. ବର୍ତ୍ତମାନ କେଉଁ ମହାଜାଗତିକ ବସ୍ତୁ ଉପରେ ଅଧିକ ଗବେଷଣା ଚାଲିଛି ?
(କ) କୃଷ୍ଣଗର୍ତ୍ତ (ଖ) ଶ୍ୱେତଗର୍ତ୍ତ (ଗ) କୃଷ୍ଣବସ୍ତୁ (ଘ) ସୁପରନୋଭା
29. 'ଉର୍ଟ ବାଦଲ' କେଉଁଠାରେ ଅବସ୍ଥିତ ?
(କ) ବୁଧ ଓ ସୂର୍ଯ୍ୟ ମଝିରେ (ଖ) ଗ୍ରହାଣୁ ବଳୟ ମଧ୍ୟରେ
(ଗ) ବୃହସ୍ପତି ଓ ଶନି କକ୍ଷ ମଧ୍ୟରେ (ଘ) ପ୍ଲୁଟୋ କକ୍ଷ ବାହାରେ
30. କେଉଁ ଜ୍ୟୋତିର୍ବିତ୍ ଯୁବକ ବେଳେ ଜଣେ ମଲ୍ଲଯୋଦ୍ଧା ଚାମ୍ପିୟନ୍ ଥିଲେ ?
(କ) ଆଲେନ୍ ସ୍ୟାଣ୍ଡେଜ୍ (ଖ) ଏଡ୍‌ଉଇନ୍ ହବଲ୍
(ଗ) ବର୍ଣ୍ଣାଡ୍ ଲୋୱେଲ (ଘ) ଉଇଲିୟମ୍ ହରଶେଲ
31. ପୃଥିବୀର କେଉଁଠାରେ ଉଲ୍‌କାଦ୍ୱାରା ସୃଷ୍ଟି ହୋଇଥିବା ବୃହତ୍ତମ ଗର୍ତ୍ତ (Crater) ଅବସ୍ଥିତ ?
(କ) ଆଫ୍ରିକାର ହୋବା (ଖ) ଭାରତର ଲୋନାର
(ଗ) ଆୟାରଲାଣ୍ଡର ଲିମରିକ୍ (ଘ) ଯୁକ୍ତରାଷ୍ଟ୍ର ଆମେରିକାର ଆରିଜୋନା
32. ମଧ୍ୟ ଯୁଗର କେଉଁ ପ୍ରଖ୍ୟାତ ଜ୍ୟୋତିର୍ବିତ୍ ନିଜ ପୁତ୍ରଦ୍ୱାରା ନିହତ ହୋଇଥିଲେ ?
(କ) ଉଲୁଗ୍ ବେଗ୍ (ଖ) ଟଲେମି
(ଗ) ସୱାଇ ଜୟସିଂହ ଦ୍ୱିତୀୟ (ଘ) କେହି ନୁହେଁ

33. କେଉଁ ପ୍ରଖ୍ୟାତ ଜ୍ୟୋତିର୍ବିତ୍ ଜ୍ୟୋତିର୍ବିଜ୍ଞାନ ପ୍ରତି ନିଜ ଅବଦାନ ଅପେକ୍ଷା ତାପମାନ ସ୍କେଲ୍ ପାଇଁ ଅଧିକ ଖାତି ଅର୍ଜନ କରିଛନ୍ତି ?

(କ) କ୍ରିଷ୍ଟିୟାନ୍ ମେୟର (ଖ) ଆଣ୍ଡରସ୍ ସେଲସିୟସ୍

(ଗ) ଲର୍ଡ୍ କେଲଭିନ୍ (ଘ) କାର୍ଲ ଗସ୍

34. ମହାକାଶରେ ବର୍ତ୍ତମାନ ସୁଦ୍ଧା ଆବିଷ୍କୃତ ସବୁଠାରୁ ଓଜନ ଅଣୁ କେଉଁଟି ?

(କ) ଏସିଟିଲ୍‌ଡିହାଇଡ୍ (ଖ) ଡାଇମିଥାଇଲ୍ ଇଥର

(ଗ) ଇଥାନଲ୍ (ଘ) ସିଆନୋ-ଅକ୍ଟାଟେଟ୍ରାଇନ୍

35. ମିଳିତ ଜାତିସଂଘ କେଉଁ ବର୍ଷକୁ 'ଆନ୍ତର୍ଜାତୀୟ ଜ୍ୟୋତିର୍ବିଦୀୟ ବର୍ଷ' ଭାବେ ଘୋଷଣା କରିଛି ?

(କ) 2007 (ଖ) 2008 (ଗ) 2009 (ଘ) 2010

36. ଧୂମକେତୁରୁ ପୃଥିବୀକୁ ଜୀବଜଗତ ଆସିଛି, ଏହି ବିବଦମାନ ତଥ୍ୟ କେଉଁ ଜ୍ୟୋତିର୍ବିତ୍ ପ୍ରଥମେ ପ୍ରକାଶ କରିଥିଲେ ?

(କ) କାର୍ଲ ସାଗନ୍ (ଖ) ଫ୍ରେଡ୍ ହୋଏଲ୍

(ଗ) ଜୟନ୍ତ ନାର୍ଲିକର (ଘ) ଉଇଲିୟମ୍ ହକିଙ୍ଗ୍

37. ଚନ୍ଦ୍ରରେ ଥିବା ଗର୍ତ୍ତଗୁଡ଼ିକର ନାମ ପରଲୋକଗତ ବିଶିଷ୍ଟ ବୈଜ୍ଞାନିକ, ଜ୍ୟୋତିର୍ବିତ୍ ଓ ମହାକାଶଚାରୀମାନଙ୍କ ନାମରେ ନାମିତ କରାଯାଇଥାଏ, ନିମ୍ନଲିଖିତ କେଉଁ ଭାରତୀୟଙ୍କ ନାମରେ ଚନ୍ଦ୍ରର ଗର୍ତ୍ତର ନାମକରଣ କରାଯାଇଛି ?

(କ) ଜଗଦୀଶ ଚନ୍ଦ୍ର ବୋଷ (ଖ) ଚନ୍ଦ୍ରଶେଖର ଭେଙ୍କଟରମଣ

(ଗ) ବିକ୍ରମ ସରାଭାଇ (ଘ) ସମସ୍ତେ

38. ଚନ୍ଦ୍ରର ଗର୍ତ୍ତକୁ ଦୂରବୀକ୍ଷଣ ଯନ୍ତ୍ରରେ ଦେଖି କେଉଁ ଜ୍ୟୋତିର୍ବିତ୍ ଏହାକୁ ସମୁଦ୍ର ଭାବିଥିଲେ ? ସେ ଏହାକୁ ସମୁଦ୍ରର ଗ୍ରୀକ୍ ନାମ "ମେରିଆ" ରଖିଥିଲେ–

(କ) ଗାଲିଲିଓ (ଖ) ଜୋହାନ୍ସ ହେଭେଲିୟସ୍

(ଗ) ମାଇକେଲ୍ ଭାନ୍ ଲାଗ୍ରେନ୍ (ଘ) ଜୋହାନ୍ ସ୍କ୍ରୋଟର

## ଉତ୍ତର

| | | | | | |
|---|---|---|---|---|---|
| 1 - ଖ | 2 - କ | 3 - ଗ | 4 - ଖ | 5 - ଖ | 6 - ଗ |
| 7 - ଖ | 8 - କ | 9 - ଖ | 10 - କ | 11 - କ | 12 - ଗ |
| 13 - ଘ | 14 - କ | 15 - ଖ | 16 - ଗ | 17 - ଖ | 18 - ଖ |
| 19 - କ | 20 - ଘ | 21 - କ | 22 - ଘ | 23 - ଗ | 24 - କ ଓ ଖ |
| 25 - କ | 26 - ଘ | 27 - କ | 28 - ଗ | 29 - ଘ | 30 - ଖ |
| 31 - ଘ | 32 - କ | 33 - ଖ | 34 - ଘ | 35 - ଗ | 36 - ଖ |
| 37 - ଘ | 38 - କ | | | | |

—

# QUIZ BOOK

1. Objective type questions now a days play a major role in all examinations starting from class to competitive examinations. Reading such books helap students to face all examinations with confidence.
2. It sharpens the memory, intelligence and creates selfconfidence.
3. It also helaps the reader to test one's own knowledge and preparedness in different subjects taught in class room.

Read the following quiz books compiled by experienced teachers to acquire all the merits.

| | |
|---|---|
| ପ୍ରାଥମିକ ବିଜ୍ଞାନ କ୍ୱିଜ୍ – | Rs. 25/- |
| ସୁରେଶଚନ୍ଦ୍ର ମହାପାତ୍ର, B.Sc., M.Ed. | |
| ଗଣିତ କ୍ୱିଜ୍ – | Rs. 45/- |
| ହିମାଂଶୁ ଶେଖର ଫତେସିଂହ, B.Sc., M.Ed. | |
| ପଦାର୍ଥ ବିଜ୍ଞାନ କ୍ୱିଜ୍ – ୧ମ ଭାଗ | Rs. 40/- |
| ହିମାଂଶୁ ଶେଖର ଫତେସିଂହ, B.Sc., M.Ed. | |
| ପଦାର୍ଥ ବିଜ୍ଞାନ କ୍ୱିଜ୍ – ୨ମ ଭାଗ | Rs. 30/- |
| ହିମାଂଶୁ ଶେଖର ଫତେସିଂହ, B.Sc., M.Ed. | |
| ରସାୟନ ବିଜ୍ଞାନ କ୍ୱିଜ୍ – | Rs. 50/- |
| ହିମାଂଶୁ ଶେଖର ଫତେସିଂହ, B.Sc., M.Ed. | |
| ଜ୍ୟୋତିର୍ବିଜ୍ଞାନ କ୍ୱିଜ୍ – | Rs. 50/- |
| ହିମାଂଶୁ ଶେଖର ଫତେସିଂହ, B.Sc., M.Ed. | |
| ମହାକାଶ ବିଜ୍ଞାନ କ୍ୱିଜ୍ – | Rs. 30/- |
| ଡଃ ମାୟାଧର ସ୍ୱାଇଁ | |
| ଗଣିତର ବୈଚିତ୍ର୍ୟ (ଗଣିତ କ୍ୱିଜ୍) – | Rs. 50/- |
| ଅଧ୍ୟାପକ ରମଣୀରଂଜନ ଦାସ | |

ପ୍ରକାଶକ : ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ – ୨